ଅଚ୍ୟୁତ ଦାସଙ୍କ ରଚିତ

# ଜ୍ଞାନପ୍ରଦୀପଗୀତା ।

( ଭକ୍ତିତତ୍ତ୍ୱ )

କଟକ ବାଲୁବଜାର ନିବାସୀ

ଶ୍ରୀ ଗୋବିନ୍ଦ ରଥଙ୍କ ଦ୍ୱାରା ସଂଶୋଧିତ ଓ ସ୍ଥାନେ

ପରିବର୍ତ୍ତିତ ହୋଇ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।




PRINTED BY S. N. MOHAMMAD

Shaikh Bazar at the Edward Press

CUTTACK

1910


[redacted]

# ଜ୍ଞାନପ୍ରଦୀପ ଗୀତା ।

କହଇ ଅର୍ଜୁନ ଶୁଣ ମହାପ୍ରଭୁ ବ୍ରହ୍ମଜ୍ଞାନ କହ ମୋତେ ।
ଏକାକ୍ଷର ବ୍ରହ୍ମ ଯାହାକୁ ବୋଲନ୍ତି ସେ ଅଛି କାହିଁ ଗୁପତେ । ୧ ॥
କହନ୍ତି ଶ୍ରୀକୃଷ୍ଣ ଶୁଣ ହୋ ଅର୍ଜୁନ ମହାଶୂନ୍ୟ ଶୂନଂ ଜାତ ।
ଶୂନ୍ୟ ମଧ୍ୟକୁ ତୁ ଲକ୍ଷ୍ୟ କର ପାର୍ଥ ଅକାର ତହିଁ ସମ୍ଭୂତ । ୨ ।
ଅକାର ଅକ୍ଷର ବର୍ଣ୍ଣର କହନ୍ତେ ଉକାର ଜନମ ହୋଇ ।
ଉକାର ଅକାର ମିଶାଇଁ ବୁଝି ତୁ ଏକାକ୍ଷର ସେ ବୋଲଇ । ୩ ।
ହ୍ରୀଁ ଅକ୍ଷରଟି ଶ୍ରୀଁ ସଙ୍ଗେ ଘେନ କ୍ଲୀଁ ତ୍ରିମୂର୍ତ୍ତିବୀଜାକ୍ଷର ।
ଏହି ବିବୀଜଟି ନାମ ବୋଲଇଲା ଜନମ ସେହି ଅକ୍ଷର । ୪ ।
ହ୍ରୀଁ ବଳଭଦ୍ର ଶ୍ରୀଁ ସୁଭଦ୍ରା ଯେ କ୍ଲୀଁ ଜଗନ୍ନାଥ ଜାଣ ।
ଏହି ବିବୀଜ ଶରୀ ଭବେ ରହିଛି ପାର୍ଥ ଏକ ଅଙ୍ଗେ ଜାଣ । ୫ ।
ହ୍ରୀଁ ବୀଜଟି ଯେ ବଂଇଶୀ ଠାବେଣ ଶ୍ରୀଁ ବୀଜଟି ହୃଦୟେ ।
କ୍ଲୀଁ ବୀଜ ଶିରେ ବସ୍ତାର ହୋଇଲା ଏମନ୍ତେ ବିବୀଜ କ୍ଷୟେ । ୬ ।
ବହ୍ନିବୀଜ ବହ୍ନି ନାମ ବୋଲଇଲା ତାଙ୍କ ଏକାନ୍ତ କର ।
ସୋମ ସୂର୍ଯ୍ୟାଗ୍ନି ମିଶାଇଁ ଏ ବିକୂଟ ଉପରେ ହେଳୁକୁ ଧର । ୭ ।
ବିକୂଟ ସ୍ଥାନକୁ ଯେବଣ ସ୍ଥାନ ଦଶି ମିଶିଲେ ଦେଖ ଅର୍ଜୁନ ।
ତହିଁକି ସେ ଯୋଗୀ ଯୋଗ ଅଷ୍ଟାଙ୍ଗରେ ରହି କରୁଛନ୍ତି ଧ୍ୟାନ । ୮ ।
ଯୋଗୀ ବୋଲି କହ ଯାହାକୁ ବୋଲନ୍ତି ଯୋଗଦ୍ୱାରେ ଦ୍ୱାକ୍ଷି ସେହି
ଯୋଗୀଜନ ଯୋଗେ ପ୍ରବେଶ ହୁଅନ୍ତେ ମନ ଜ୍ଞାନକୁ ହରାଇ । ୯ ।
ଅଜପା ବୋଲୁଟି ଯେବଣ ସେ ମନ୍ତ୍ର ଜପିଲେ ଛାଡ଼ଇ ଦ୍ୱାର ।
ଦ୍ୱାର ଛାଡ଼ିଲେ ମହାଶୂନ୍ୟ ଦିଶିବ ତହିଁକି ତ ଲକ୍ଷ୍ୟ କର । ୧୦ ॥
ସେହି ଠାବରେ ବିକ୍ରମ ରୂପ ଜ୍ୟୋତି ସାକ୍ଷାତେ ଉଦୟ ହୋଇ ॥

ପାଦ ପାଣି କର୍ଣ୍ଣ ନାସା ଚକ୍ଷୁ ଜିହ୍ୱା ରେଖ ରୂପ ଯାର ନାହିଁ । ୧୧ ॥
ଅବ୍ୟକ୍ତ ବର୍ଣ୍ଣ ଅଶୂନ୍ୟ ରୂପ ଶୂନ୍ୟ ଅରୂପ ତାହାର କେହ୍ନ ।
କୋଟି ଚନ୍ଦ୍ର କୋଟି ଅଗ୍ନି ତେଜ ରୂପ ତାର ରୂପକୁ ଗଞ୍ଜଇ । ୧୨ ।
ଅଜ୍ଞାନଜନଙ୍କୁ ଅଦୃଶ୍ୟ ହୁଅଇ ସୁଜ୍ଞାନଙ୍କ ଦୃଶ୍ୟ ହୋଇ ।
ସ୍ଥାବରଜଙ୍ଗମ କୀଟ ପତଙ୍ଗରେ ଘଟେ ଘଟେ ପୂରିଛଇ । ୧୩ ।
ସଦଗୁରୁ ସେବା କରିଥିଲେ ଜାଣି ଆଜ୍ଞା ଥିଲେ ତାହା ପାଇ ।
ସାଧୁଜନଙ୍କ ବଚନକୁ ପ୍ରଖତ ଅତ୍ୟୁତ ହାପ କହଇ । ୧୪ ।

ଇତି ଶ୍ରୀ ଜ୍ଞାନପ୍ରଦୀପ ଗୀତାୟାଂ ସୁପନ୍ନାସସ୍ତୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।

---

ଦ୍ୱିତୀୟ ଅଧ୍ୟାୟ ॥

କହନ୍ତି ଅର୍ଜୁନ ଶୁଣ ଗୋସାଇଁ ।
ଅବ୍ୟକ୍ତପୁରୁଷ କାହିଁରେ ଥାଇଁ । ୧ ।
ଜୀବ ପରମ ବୋଲନ୍ତି ଯେ କାହିଁ ।
ଏହା ବୁଝାଇ କହ ଭବତ୍ରାହି । ୨ ।
ପରମ ଦଶଇ କେବଣ ବର୍ଣ୍ଣ ।
ଜୀବର ବର୍ଣ୍ଣ ସେ କେବଣ ପୂର୍ଣ୍ଣ । ୩ ।
ଜୀବଗୋଟି କାହିଁ ରହିଲା କହ ।
ପରମ ହୋଇଛି କେବଣ ଦେହ । ୪ ।
ଏକା ଘରେ ଲୀଳା କରନ୍ତି ରହ ।
ଏମନ୍ତ ବୋଲନ୍ତି ସାଧୁମାନେ କହ । ୫ ।
ଶ୍ରୀହରି ବୋଲନ୍ତି ଶୁଣ ହୋ ପାର୍ଥ ।
ପଚାରିଲୁ ଯାହା ଅତି ଗୁପତ । ୬ ।
ଅଜ୍ଞାନୀକି ବ୍ୟକ୍ତ କରିବୁ ନାହିଁ ।
ଅବ୍ୟକ୍ତ ପୁରୁଷ ଶୂନ୍ୟରେ ଥାଇ । ୭ ।

ଜୀବ ପରମ ତା ବେନି ଚରଣ ।
ଜୀବ ପରମ ମୁଁ ହୋଇଛୁ ଜନ୍ମ । ୮ ।
ହୋଇଛୁ ଅଶେଷ ପରମ ଚନ୍ଦ୍ର ।
ଜୀବ ପ୍ରକାଶ ଅଛୁ ଯେତେ ବର୍ଣ୍ଣ । ୯ ।
ବାମପାଦ ଜୀବ ରହିଛୁ ଟି ଏ ।
ଦକ୍ଷିଣପାଦ ପରମ ବିଜୟେ । ୧୦ ।
ଏକସ୍ଥାନେ ଲୀଳା କରନ୍ତି ବେନି ।
ପରମ ରହିଛୁ ଜୀବକୁ ଘେନି । ୧୧ ।
ଯାହା ପଚାରିଲ୍ କହିଲ୍ ପାର୍ଥ ।
ପରମ ତତ୍ତ୍ୱ ଯେ ଅତି ଗୁପତ । ୧୨ ।
କହଇ ଅର୍ଜୁନ ଶୁଣ ଶ୍ରୀହରି ।
ପଚାରୁଛୁ ଯାହା କହ ବିସ୍ତାରି । ୧୩ ।
ଜୀବ ପରମରେ ସନ୍ଦେହ ହେଲା ।
ମାଈ କେ ଅସ୍ତିତ୍ୱ ଜଣା ନ ଗଲା । ୧୪ ।
ଜୀବ ପରମ ତ ଅଟନ୍ତି ଦୁଇ ।
ପୁଣ ବୋଲନ୍ତି ଏକ ରୂପ ସେହି । ୧୫ ।
ଶ୍ରୀହରି ବୋଲନ୍ତି ଶୁଣ ସବ୍ୟସାଚି ।
ଗୁପତ ହୋଇଁ ଏ କଥା ରହିଛୁ । ୧୬ ।
ଜୀବଟି ମାଈ ପରମ ଅଣ୍ଡିତ ।
ଜୀବରେ ପରମ କରେ ବିହାର । ୧୭ ।
ଅନଳ ଧୂମ ଯେସନ ପ୍ରକାର ।
ଜୀବ ପରମ ଏକଇଁ ଶରୀର । ୧ ।
ଶୁଣ ସେ ଜ୍ଞାନ ପୁଛିଲ୍ ଅର୍ଜୁନ ।
ଜୀବ ପରମଙ୍କ କଳା ବିଧାନ । ୧୯ ।
କେତେ କେତେ କଳା ଶିବ ଦିବସ ।

କେତେ କଳା ଘେନି ରଜୁଛୁ ହଂସ । ୨୦ ।
କେତେ ଦୁଆରେ କେତେ ବା କବାଟ ।
କେଉଁ ଠାରେ ସର୍ପ ଜଗିଛୁ ଘାଟ । ୨୧ ।
କେଉଁ ଦ୍ୱାର-ସେହୁ ନିରୋଧ ହୋଇ ।
କେଉଁ ଦ୍ୱାରେ କବାଟ ଲାଗିଛଇ । ୨୨ ।
ଅନନ୍ତ ରହନ୍ତି କେଉଁ ପ୍ରକାରେ ।
କେଉଁ ଦୀପ ଜଳେ କେଉଁ ଠାବରେ । ୨୩ ।
କହନ୍ତି ହରି ଶୁଣ ପଣ୍ଡୁବାଳା ।
ଜୀବ ପରମଙ୍କ ବତିଶ କଳା । ୨୪ ।
ଷୋଡଶ କଳାରେ ରବି ଦିବସ ।
ଅଷ୍ଟକଳା ଘେନି ନିତ୍ୟ ଯେ ବସ । ୨୫ ।
ଆହାର ନିଦ୍ରା ମଇଥୁନ ବାଣ ।
ଚନ୍ଦ୍ରର ଏ ଗୃହ କଳା ଅଟଇ । ୨୬ ।
ଉର୍ଦ୍ଧ ଧୂମ୍ର ଜ୍ୟୋତି ଜ୍ୱାଳା ଏ ଗୃହ ।
ସୂର୍ଯ୍ୟକଳା ଗୃହ ଦ୍ୱାରେ ଦାହାଣି । ୨୭ ।
ଏ ଗୃହ ଦ୍ୱାରେ ଏକ କବାଟହିଁ ।
ଦୋମୁହାଁ ସର୍ପ ତହିଁ ଜଗିଥାଇ । ୨୮ ।
ନିରୋଧ ଦ୍ୱାର ଅଟେ ଶିଷୁମ୍ନା ।
ତାଳ କବାଟ ଲାଗିଅଛି ଅଜା । ୨୯ ।
ଯୋଗମାୟା ପରେ ଅନନ୍ତ ରହି ।
ମାଣିକ୍ୟଦୀପ ସେଠାରେ ଜଳଇ । ୩୦ ।
ରବି ଦିବସ ଦୁଇ ନାହିଁ ଯହିଁ ।
କୋଟି ଦିବାକର ଉଦୟ ହୋଇ । ୩୧ ।
କହେ ଅର୍ଜୁନ ଶୁଣ ଦେବରାୟେ ।
ପୁଚ୍ଛିବ ମୁହିଁ ଅଦ୍ଭୁତ କଥାଏ । ୩୨ ।

କେମନ୍ତ ଅବା ସ୍ୱରୂପଟି ସେହି ।
କେମନ୍ତ ପ୍ରକାରେ ଶରୀର ବହି । ୩୩ ।
କେଉଁ ଜପ ତପ ମନ୍ତ୍ରରେ ଅବା ।
କାହାକୁ ଭାବିଲେ ତାଙ୍କୁ ପାଇବା । ୩୪ ।
କେଉଁ କଥା ଅବା ଅତି ଗୁପତ ।
କାହିଁ ବ୍ରହ୍ମାଣ୍ଡ ବା ହୋଇଛି ଜାତ । ୩୫ ।
ନାମଟି ଏ କାହିଁ ଜାତ ହୋଇଲା ।
ସଂସାରରେ ପୁଣ ଉଦିତ ହେଲା । ୩୬ ।
ନାମଗୋଟି ସେ ଯେ କେମନ୍ତ ଭାବ ।
କର୍ତ୍ତା ଚିହ୍ନ ତା କେମନ୍ତ କହିବ । ୩୭ ।
କହନ୍ତି ଶ୍ରୀହରି ଶୁଣ ଅର୍ଜୁନ ।
ତୋତେ କହିବା ଏ ଗୁପତ ଜ୍ଞାନ । ୩୮ ।
ଭୁଲି ଯେ ପଣ୍ଡିତ ପାରୁ ଏମାନ ।
ଯାହା ନ ଜାଣନ୍ତି ଚତୁରାନନ । ୩୯ ।
ତୁ ପଚାରିଲୁ ସେ ରୂପ କେମନ୍ତ ।
କହୁଛି ଶୁଣ ତୁ ତଥ୍ୟ ତଦନ୍ତ । ୪୦ ।
ସ୍ଥୂଳ ନୋହେ ଶୂନ୍ୟ ନୋହେ ଅରୂପ ।
ଭକ୍ତ ଭକ୍ତିଭାବେ ବହନ୍ତି ରୂପ । ୪୧ ।
ବ୍ରତ ଜପ ତପ ମନ୍ତ୍ରେ ନ ପାଇ ।
ଭାବିଲେ ନାମ ଅନାମକୁ ପାଇ । ୪୨ ।
ଅତିଅଗୋଚର ଅନାମଖଣ୍ଡ ।
ଅବତାର ଯହିଁ କୋଟି ବ୍ରହ୍ମାଣ୍ଡ । ୪୩ ।
ଅନାମ ଖଣ୍ଡୁ ଜାତ ହୋଇ ନାମ ।
ସଂସାର ନାମରୁ ହେଲା ଜନମ ।
ଅତିଗୁପତ ଏ ନାମ ମହିମା ।

ବର୍ଣ୍ଣ ଚିହ୍ନ ଯାର ନ ଜାଣେ ବ୍ରହ୍ମା ।
ମୁହିଁ ବା କେଉଁ ଛାର ଲୋକ ହୋଇ ।
ମୂର୍ଖରେ ମୁଁ ଏହା କହିଁ ଲୋଡ଼ଇ ॥
ସାଧୁଙ୍କ କରୁଣା ଗୁରୁଙ୍କ ଆଜ୍ଞା ।
ମୋହର କାହିଁ ସେ ଏଡ଼େ ପ୍ରତିଜ୍ଞା ॥
ତୁଳ ଶୂନ୍ୟେ ନାହିଁ ପରମାନନ୍ଦ ।
ତାହା ଜାଣନ୍ତି ସେ ଭକତ ବୃନ୍ଦ ॥
ଭକତଜନ ପାଦ ଅରବିନ୍ଦ ।
ଧ୍ୟାୟି କର କହେ ଅଚ୍ୟୁତାନନ୍ଦ । ୪୫ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଶ୍ରୀକୃଷ୍ଣଅର୍ଜୁନସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

ତୃତୀୟ ଅଧ୍ୟାୟ ।

କହନ୍ତି ଅର୍ଜୁନ ଶୁଣିମା ଶ୍ରୀହରି କହ ଜ୍ଞାନର ବିଚାର ।
କେମନ୍ତ ପ୍ରକାରେ ଜ୍ଞାନର ମହିମା ଶୁଣିବାକୁ ମନ ମୋର । ୧ ।
ସ୍ୱରୂପେ ମନ୍ତ୍ର ଯେ ସ୍ଥାପନା ହୁଅଇ କେଉଁ ଛାର ତହିଁ ବସି ।
ଅଣଅକ୍ଷର ଯେ କାହାକୁ ବୋଲିବା ତାହା କହିବା ବିଶେଷି । ୨ ।
ଏକାକ୍ଷର ମନ୍ତ୍ର କେଉଁ ଅକ୍ଷର ସେ କେଉଁ ଠାବରେ ରହିଲା ।
ଏମନ୍ତେ ବାର ମାତ୍ରା ଅଷ୍ଟତିକି କେଉଁ ମନ୍ତ୍ର କାହିଁ ବସିଲା । ୩ ।
ଯନ୍ତ୍ରରେ ଯନ୍ତ୍ର ବେନ ଦଳ ବସଇଁ ସେ କାହୁଁ ହୋଇଲେ ଜାତ ।
କେଉଁ ଦଳୁ ଆତ୍ମା ସମ୍ଭୂତ ହୋଇଲା କହିବା ଏଥି ତଦନ୍ତ । ୪ ।
ପୃଥ୍ୱୀ ଆପ ତେଜ ବାୟୁ ଜଯ ଆକାଶ କେଉଁ ଦଳରୁ ସେ ହେଲେ ।
ପ୍ରାଣାପ୍ୟାନ ବ୍ୟାନ ଉଦାନ ସମାନ କେଉଁ ଦଳୁଁ ଜନମିଲେ । ୫ ।
ପିଣ୍ଡିବିନ୍ଦୁ ଗୃହସ୍ଥର ମୂଳ ବୀଜ କେଉଁ ଦଳରୁଁ ସେ ହୋଇ ।
ଅବନା ବୋଲନ୍ତେ ଅର୍କ ପାଇଲା କେତେ ଅକ୍ଷର ଉଚ୍ଚରଇ । ୬ ।

କେଉଁ ଅକ୍ଷରୁ କେ କରୂପେ ହେଇଲା ଷୋଳଦଳୁଁ କାହୁଁ ହୋଇ ।
ଦ୍ୱାଦଶ ଦଳ କରୂପେ ଜନମିଲା ତାହା କହ ଯଦୁସାଇଁ । ୭ ।
ଦଶଦଳ ବୋଲି କାହାକୁ କହନ୍ତି ସେ କେଉଁ ଦଳୁଁ ଉତ୍ପତ୍ତି ।
ଛଅଦଳ ଜନ୍ମ ଚତୁର୍ଦ୍ଦଳ କେଉଁ ଅକ୍ଷରୁ କହ ଦାଶରଥି । ୮ ।
କେ କାହୁଁ କରୂପେ ଜନମ ହୋଇଲେ କହ ଆଦ ଅନ୍ତ କରି ।
ଷଡ଼ଚକ୍ରେ ପ୍ରାଣଶରୀର ପବନ ମନ କରୂପେ ବହରି । ୯ ।
ଅଷ୍ଟାଙ୍ଗଯୋଗ ଗୁରବେଦ ଓଁକାର ଏକାକ୍ଷର ଅଣାକ୍ଷର ।
ସଂକ୍ଷେପେ ଏହା କହନ ମହାବାହୁ ଯେବେ ମୁଁ ଭୃତ୍ୟ ତୁମ୍ଭର । ୧୦ ।
ମୁହିଁ ହୀନଜନ ନାହିଁ ମୋର ଜ୍ଞାନ ଏ ସନ୍ଧି ପାଇବି କାହିଁ ।
ତୁମ୍ଭେ ଗୁରୁ ମୋତେ ସୁଦୟା କର ଯେ ଶୁଣି ତରୁଁ ଉଦ୍ଧାରଇଁ ।୧୧।
କହନ୍ତି ଶ୍ରୀକୃଷ୍ଣ ଶୁଣ ହୋ ଅର୍ଜୁନ ତୋ ଆଗେ କହୁଛି ମୁହିଁ ।
ପୁଚ୍ଛିଲୁ ତୁ ଯାହା କହିବି ମୁଁ ତାହା ନ କହିବୁ ଅଜ୍ଞାନେହିଁ । ୧୨ ।
ବିଷମ ସନ୍ଧି ସେ ଅତି ଅଗୋଚର ବଚନେ ଜନାହେ ବଖାଣି ।
ଯାହା ପଚ୍ଛିଲୁ ମନ୍ତ୍ରର ମହିମା ଶ୍ରୀଗୁରୁ କହିଲେ ଜାଣି । ୧୩ ।
ହେବୁ କରି ଶୁଣ ପ୍ରଥମ ଯନ୍ତ୍ରକୁ ସ୍ଥାପନ ଏମନ୍ତେ ହେଲା ।
ଅଣଅକ୍ଷର ଶୂନ୍ୟରୂପେ ତହିଁ ସେ ପାରୁଶେ ଅକାର ହେଲା । ୧୪ ।
ଅକାର ପାରୁଶେ ଗାର ବସାଇଲେ ଆକାର ସେ ତହିଁ ଦେଇ ।
ତହିଁ ପାରୁଶରେ ଶୂନ୍ୟ ବସାଇଲେ ଯେଉଁରୂପେ ଯନ୍ତ୍ର ହୁଅଇ । ୧୫ ।
ତହିଁ ତଳେ ଗୁରଅଙ୍କ ଗାର ଉପରେ ମାତ୍ରା ଅଙ୍କପାଶେ ଦେଇ ।
ଉପରେ ସେ ମାତ୍ରା ବସାଇଲେ ଏକାକ୍ଷର ବେନଦଳ ହୋଇ । ୧୬ ।
ବେନଦଳ ବୋଲି ଯାହା ସେ ବୋଲନ୍ତି ସେହୁ କର ଛାହ୍ମା ଦେନ ।
ସେହୁ ଠାବରୁଟି ଜ୍ଞାନ ସେ ଉତ୍ପତ୍ତି କହିଲି ତୋତେ ଅର୍ଜୁନ । ୧୭ ।
ହଂ କ୍ଷଂ ବୋଲିଣ ନାମଟି ଯାହାର ସେ ବେନଦଳ ହୋଇ ।
ଉଦେ ଅସ୍ତ ଯେଉଁ ଠାବରେ ହୁଅଇ ଜ୍ଞାନଟି ସେହି ଅଟଇ । ୧୮ ।
ପୃଥ୍ୱୀ ଆପ ତେଜ ବାୟୁ ସେ ଆକାଶ କହିବା ଏଥୁ ବିଧାନ ।

ହଂ ଦଳରୁ ଏ ପ୍ରକାଶ ହୋଇଲେ ଶୁଣ ତୁ ହେ। ଅର୍ଜୁନ। ୧୯ ।
ପ୍ରାଣାପାନ ବ୍ୟାନ ଉଦାନ ସମାନ ଏ ଜ୍ଞାନ କହିବା ତୋତେ ।
ଯଂ ଦଳରୁ ଏ ଜନମ ହୋଇଲେ ଶୁଣ ତୁ ହେ। ପଣ୍ଡୁସୁତେ । ୨୦ ।
ଆହୁର ତୋତେ କହିବା ଯେ ସୂତଶ୍ରେ ଗୁରୁବେଦର ବଗ୍ରବ ।
ଗୁରୁବେଦ ମଧ୍ୟେ ପୂର ପ୍ରକାଶିଛି ଅଷ୍ଟାଙ୍ଗ ଟି ନାମ ଯାର । ୨୧ ।
ପରିରଜ ବୋଲି ଯାହାକୁଟି କହି ଜାତସିଦ୍ଧି ବେଦଙ୍ଗରୁ ।
ଗଣବଦ ବୋଲି ଏ ଗୁଢ଼ଅକ୍ଷର କହିଲି ରସ୍ତୁ ଅକ୍ଷରୁ । ୨୨ ।
ଏବେ କହିବା ତା ଶୁଣନା ହେ। ପାର୍ଥ ଷୋଳଦଳର ବଗ୍ରବ ।
ଯେଉଁ ଦଳରୁ ଯେ ଜନମ ହୋଇଲେ ହେଜ ନାମ ରୂପାକ୍ଷର । ୨୩ ।
ଅଆ ଇଈ ଉଊ ଋୠ ବୋଲି ପାର୍ଥ ଏ ଆଠଅକ୍ଷର ବୋଲାଇ ।
ଌୡ ଏଐ ଓଔ ଅଂ ଅଃ ଟି ଆଦି ଯେ ଏତେ ଷୋଳଦଳ ହୋଇ । ୨୪ ।
ଦ୍ୱାଦଶ ଦଳର ମହିମାଟି ଶୁଣ ଷୋଳ ଦଳରୁ ଜନ୍ମଇ ।
କ ଖ ଗ ଘ ଟି ଯେ ଜାଣ ଙ ଚ ଛ ଜ ଅକ୍ଷର ପ୍ରମାଣ ଏହି । ୨୫ ।
ଅଆ ଇଈ ଉଊ ଋୠ ଯା ବୋଲନ୍ତି ଅଷ୍ଟ ଅକ୍ଷର ଏ ସ୍ଥିତି ।
ଏ ଅଷ୍ଟଅକ୍ଷରୁ ଯେ ଷଡ଼ ଅକ୍ଷର କହିଲୁଁ ସୁଭଦ୍ରାବନ୍ତି । ୨୬ ।
ଆଉ ଷଡ଼ାକ୍ଷର ମହିମାଟି ଶୁଣ ଛ ଜ ଝ ନାମ ବୋଲାଇ ।
ଞ ଟ ଠ ଏ ଷଡ଼ ଅକ୍ଷର କହିବା ତୋତେ ହେ। ପାର୍ଥ ବୁଝାଇ । ୨୭ ।
ଌୡ ଏଐ ଓଔ ଅଂ ଅଃ ଅଷ୍ଟାକ୍ଷର ଏହି ସ୍ଥିତି ଯେ ପ୍ରମାଣ ।
ଛ ଜ ଝ ଞ ଟ ଠ ଏ ଷଡ଼ ଅକ୍ଷର ଜାତ ଅଷ୍ଟାକ୍ଷରୁ ପୁଣ । ୨୮ ।
ଦଶ ଦଳ ବୋଲି ଯାହାକୁ ବୋଲିଟି ଜନ୍ମ ଦ୍ୱାଦଶ ଦଳରୁ ।
ଡ ଢ ଣ ତ ଥ ଯାହା କହି କ ଖ ଗ ଘ ଙ ଚ ଛ ଯେ ତହିଁରୁ । ୨୯ ।
ଆଉ ପାଞ୍ଚାକ୍ଷର ଦ ଧ ନ ପ ଫ ଟି ନିଶ୍ଚୟ କରି ତୁ ଜାଣ ।
ଷଡ଼ ଛ ଝ ଞ ଟ ଠାରୁ ଜନମ ଯେ ଏ ପାଞ୍ଚାକ୍ଷର ପ୍ରମାଣ । ୩୦ ।
ଷଡ଼ଦଳ ବୋଲି ନାମଟି ଯାହାର ଦଶ ଦଳରୁ ଯେ ଜାତ ।
ଡ ଢ ଅଣ ତ ଥଅରୁ ଯେ ବ ଭ ମ ହୋଇଅଛନ୍ତି ଦୃଢ଼ ॥

ଯ ର ଲ ଭନ ଯେ ଅକ୍ଷର ଦ ଧ ନ ପ ଫ କୁ ହୋଇଲେ ଜାତ ।
ଚତୁର୍ଦ୍ଦଳ କଥା ବିଶେଷି କହିବା ଷଡ଼ଦଳରୁ ନିର୍ମିତ ॥
ବଂ ଅ ଶ ବୋଲି ଯେ ଏ ଭିନି ଅକ୍ଷର ବ ଭ ମ ରୁ ଜାତ ହେଲେ ।
ଷ ସ ବେନିଅକ୍ଷର ଯାହାକୁଟି କହ ଜ ର ଲକୁ ଜନମିଲେ ॥
ଷଡ଼ଚକ୍ରେ ପଞ୍ଚାଶ ଅକ୍ଷର ମନପବନ ଶିସୁମ୍ନା ଦ୍ୱାର ।
ଅଷ୍ଟାଙ୍ଗେ ଯୋଗ ଯେ ବେଢ଼ି ରହିଅଛି ଗୃହବେଦ ମଧ୍ୟେ ଯାର ।
ଗୃହ ବେଦ ମଧ୍ୟେ ଓଁକାର ପୀଠ ଯେ ଶିରେ ଯୋନି ଅର୍ଦ୍ଧମାତ୍ରା ।
ଅର୍ଦ୍ଧମାତ୍ରାପରେ ବିନ୍ଦୁବ୍ରହ୍ମ ବସେ ତାଙ୍କୁ ବୋଲି ବ୍ରହ୍ମଯନ୍ତ୍ର ॥
ବିନ୍ଦୁକୁ ବେଢ଼ି ବଙ୍କନାଳ ରହିଛି ବଙ୍କନାଳ ବୋଲି ଯାକୁ ।
ତ୍ରିବେଣୀ ଘାଟ ଯେଉଁଠାରେ ଅଛଇ ଲକ୍ଷ୍ୟ କର ପାଅ ତାକୁ ॥
ବିନ୍ଦୁ ଉପରେ ଜ୍ୟୋତି ରୂପ ପ୍ରକାଶ ଜ୍ୟୋତିକଟି ନାମ କହି ।
ନାମ ଉପରେଟି ଅନାମ ରହିଛି ଏପରେ ପଦାର୍ଥ ନାହିଁ ॥
ଅତି ଅଗୋଚର ବିଷମ ହେଲୁ ଯେ ଯେ ମହାନୁଭବରେ ଦୃଶ୍ୟ ।
ଶ୍ରୀଗୁରୁ ବଚନ ହୃଦପଦ୍ମେ ଘୋଷି ମୁକ୍ତିନେ ଜାଗ୍ରତେ ବସ ॥ ୩୯ ।
ଶ୍ରୀଗୁରୁ କୃପାରେ ଯେ ଜ୍ଞାନ ସ୍ଫୁରଣ ହୃଦେ ଥାଇ ଧ୍ୟାନ କହି ।
ବାଇ ପ୍ରାୟେ ହୋଇ ଏହା ମୁଁ ବୁଝଇ ଏଣୁ ହେଲୁ ମୋର କାହିଁ ।
ସାଧୁଜନେ ମୋର ଦୋଷକୁ ନ ଧର ମୁଁ ତୁମ୍ଭ ଦାସର ଦାସ ।
ବିଷୟାଲଙ୍କେ ବନ୍ଦ ହୋଇ ରହିଛି ବାନ୍ଧି ଛନ୍ଦାଛି କାଳପାଶ ॥
ମୋ ମନହିଁ ମୋତେ ଆୟୁଷ ନୋହିଲା ଭକତି ସଙ୍ଗତେ ପଡ଼ି ।
ଏକାଦଶ ଇନ୍ଦ୍ରି ବଶ କରୁଅଛି ତେଣୁ ମୁଁ ସଙ୍ଗତ ଛଡ଼ି ॥
ଅଚ୍ୟୁତ ଦାସ ମୁଁ ଅତି ଅଜ୍ଞାନହିଁ ମୂର୍ଖ ମୂର୍ଖ ସଙ୍ଗେ ପଡ଼ି ।
ଲଭି ନ ପାରିଲି ଶ୍ରୀଗୁରୁ ପଦ୍ମରେ କେମନ୍ତେ ହୋଇବା ପାର ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାସ୍ୱାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।

——୦——

## ଚତୁର୍ଥ ଅଧ୍ୟାୟ ।

ଶ୍ରୀହରି ଚରଣ ଧରି ପଚାରଇ ପାର୍ଥ ।
ଅବ୍ୟକ୍ତ ବୋଲାଇ ରୂପ କାହିଁ ହେଲା ଗୁପ୍ତ । ୧ ।
ସ୍ୱରୂପ କରଣ ମୋତେ କହିବା ବିସ୍ତାରି ।
ଯେମନ୍ତେ ମନକୁ ପ୍ରତ୍ୟେ ପାଇବ ଶ୍ରୀହରି ॥ ୨ ।
ନାମ ରୂପ ଦୁଇ ମୋତେ କହିବା ଭେଦାଇ ।
ତୋହର ପାଦପଦ୍ମ ବିନୁ ଅନ୍ୟ ଗତି ନାହିଁ । ୩ ।
ଶ୍ରୀହରି ବୋଇଲେ ଯାହା ପୁଚ୍ଛିଲୁ ଅର୍ଜୁନ ।
ଅବ୍ୟକ୍ତ ଗୁପତ ଏ ବୋଲାଇ ବ୍ରହ୍ମଜ୍ଞାନ । ୪ ।
ସଂସାର ଭିତରେ ଯେତେ ଦେଖୁଛୁ ସ୍ୱରୂପ ।
ଜ୍ୟୋତି ରୂପେ ନାମ ତହିଁ ହୋଇଅଛି ଗୁପ୍ତ । ୫ ।
ରୂପକୁ ବେଢ଼ିଣ ନାମ ଲୀଳା କରୁଅଛି ।
ଶେଷ ରୂପକୁ ନାମ ଯେ ଗମ୍ଭୀର ଧରୁଛି । ୬ ।
ସେ ରୂପଟି ଅଣାକାର ଅବ୍ୟକ୍ତ ଅଟଇ ।
ଯେଉଁ ରୂପରୁ ଅଶେଷ ବର୍ଣ୍ଣ ଝରୁଛଇଁ । ୭ ।
ନାମ ନାମ ଉଚ୍ଚାରନ୍ତେ ମନା ମନା ହେଲା ।
ଏଣୁକରି ନାମେ ରୂପ ମିଶିଣ ରହିଲା । ୮ ।
ନାମକୁ ଯେ ଧରିଥିବା ଯାଏ ଦେହ ଥାଇଁ ।
ନାମ ବିଭିନ୍ନ ହୋଇଲେ ରୂପ ଥିବ କାହିଁ । ୯ ।
ଅର୍ଜୁନ ବୋଇଲେ ପ୍ରଭୁ ଶୁଣ ବାସୁଦେବ ।
ପୁଚ୍ଛିବି କଥାଏ ମନୁ ସଂଶୟ ଫେଡ଼ିବ । ୧୦ ।
ନାମରୁ କି ରୂପ ଯେ କି ରୂପୁଁ ନାମ ହେଲା ।
ଏ ଦୁଇକଥାରେ ମୋତେ ସନ୍ଦେହ ଲାଗିଲା । ୧୧ ।
ଶ୍ରୀହରି କହିଲେ ଆହେ ଧନଞ୍ଜୟ ଶୁଣ ।
ସଂଶୟ ଛୁଟାଇ ତୋତେ କହି ଦେବା ଜ୍ଞାନ । ୧୨ ।

ଅଗହୁଁ ଯେ ନାମ ଥିଲା ରୂପକୁ ଗଢିଲା ।
ରୂପର ଭିତରେ ନାମ ପୂର୍ଣ୍ଣ ପ୍ରକାଶିଲା । ୧୩ ॥
ନାମକୁ ଚହ୍ନିଲେ ସିନା ରୂପକୁ ଜାଣିବ ।
ରୂପ ନ ଥିଲେଣ ନାମ କାହିଁ ଭଣାଇବ । ୧୪ ।
ନାମ ରୂପ ଧରି ରୂପ ଉହ୍ଲସ୍ତ ଜଗତେ ।
ସଂଶୟ ପିଟାଇ ପାର୍ଥ କହ ଦେଖି ତୋତେ । ୧୫ ॥
ଅଲେଖ ରୂପରେ ଯୋଗମାୟା ଶକ୍ତିଘରେ ।
ବଢେ କର ମହାଉର୍ଦ୍ଧ ମଧ୍ୟେ ଲୀଳାକରେ । ୧୬ ।
ପୁଣି ପଚ୍ଚରଇଁ ପାର୍ଥ ଶିରେ କର ଦେଇଁ ।
କେତେ କଳା ଘେନି ନାମ ଉଦେ ହୋଇଥାଇଁ । ୧୭ ॥
କାହୁଁ ନାମ ଉପୁଜିଲା ରୂପ କାହୁଁ ହେଲା ।
ଏ ଦୁଇ କଥାରେ ମୋତେ ସନ୍ଦେହ ପଶିଲା । ୧୮ ।
ଅର୍ଜୁନକୁ ଶ୍ରୀହରି ଯେ କହନ୍ତି ବଚନ ।
କହିଲ ଯେତେ ଏ ସବୁ ଏଥିର ବିଧାନ । ୧୯ ।
ଅନାକାରୁ ନାମ ଗୋଟି ହୋଇଲା ଜନମ ।
ଅନାମ ଅଛଇ ଯେ ପରମ ଶୂନ୍ୟଧାମ ॥
ଷୋଳକଳା ଘେନି ନାମ ଉତ୍ପନ୍ନ ହୋଇଲା ॥
ବାରକଳା ଘେନିଣ ସଂସାରେ ବିହରିଲା ॥
ଆଉ ଚଉକଳା ଅନ୍ତରୀକ୍ଷ ହୋଇ ରହି ।
ଶବ୍ଦ ଗନ୍ଧ ରୂପ ରସ ଏ ଚାରି ମିଶାଇଁ । ୨୨ ॥
ଚାରିବେଦ ମଧ୍ୟରେ ଯେ ବର୍ଣ୍ଣିଲେ ନାମ ।
ଚତୁର୍ଭୁଜ ଧରି ତହିଁ କରନ୍ତି ବିଶ୍ରାମ । ୨୩ ।
ହଂସ ଖେଳ ନାମ ସେହୁ ଭାଷଇ ଶବଦ ।
ଗୋଚର ଇନ୍ଦ୍ରିରେ ଥାଇ କର୍ମେନ୍ଦ୍ରିରେ ଭେଦ ।୨୪।
ନାମର ମହିମା ପାର୍ଥ ଅତି ଅଗୋଚର ।

ହେତୁ ଜର ମୃତ୍ୟୁଞ୍ଜୟ ହେଲେଟି ଶଙ୍କର ।୨୫।
ହେତୁ ନ ଜାଣ ବ୍ରହ୍ମା ତେଣୁ ହୋଏ ନାଶ ॥
ନାମ ବ୍ରହ୍ମ ଚରଚର ଫୂର ଚତୁର୍ଦ୍ଦଶ । ୨୬ ।
ମନକୁ ଅମନ ଯେବେ କରିପାରୁ ବୁଦ୍ଧ ।
ଅବିଦ୍ୟା ମଧ୍ୟେ ଦୂର ହୁଅନ୍ତି ଅଲେ କର ବୁଦ୍ଧ । ୨୭ ।
ଅର୍ଜୁନ ବୋଇଲେ ପ୍ରଭୁ ଲାଗିଲା ସନ୍ଦେହ ।
ମନ ଅମନ କେମନ୍ତେ ହୋଏ ତାହା କହ । ୨୮ ।
ଶ୍ରୀଧର ବୋଇଲେ ତୁ ଯା ପୁଚ୍ଛିଲୁ ଅର୍ଜୁନ ।
କହୁଛି ଶୁଣରେ ଏବେ ତହିଁ କର ଧ୍ୟାନ । ୨୯ ।
ଜଳ କ୍ଷଣ୍ଡି ଚଞ୍ଚଳ ଏ କଳ୍ପନାଦି କହି । ୦
ଖେଳୁଅଛି ମନ ଭ୍ରମରେ ମନୁଷ୍ୟଙ୍କୁ ଆବୋର । ୩୦ ।
ନିର୍ବିକଳ୍ପ ନିର୍ମୋହ ଯେ ସ୍ଥିରଚିତ୍ତ ହୋଇ ।
ମହାଜ୍ଞାନୀ ହେଲେ ମନ ଅମନ ବୋଲାଇ ॥
ତୁ ମୋହର ଜୀବଆତ୍ମା ମୁଁ ତୋର ପରମ ।
କେଣ କହିଲଇଟି ତୋତେ ଜ୍ଞାନରସ ମର୍ମ ॥
ଶୁଣିକରି ଅର୍ଜୁନ ହୋଇଲେ କୃତ କୃତ ।
ନାସ୍ତିରଲା ନିସ୍ତରିଲା ହୋଇଲା ମୁକତ ॥
ତୁମ୍ଭର ଦର୍ଶନେ ଦେହ ଥାଉଁ ମୁକ୍ତ ହୋଇ ॥
କୋଟି କଳ୍ପାନ୍ତରେ ଯୋଗୀ ଜାଣି ନ ପାରନ୍ତି ।
କହିଲ ମୁଁ ଯେତେ ତୋତେ ଜ୍ଞାନ ପରସଙ୍ଗ ।
ତୁଟିଲେକ୍ଷି ମୁକ୍ତି ପାଥ ମିଶିଲେଟି ସଙ୍ଗ ॥
ସାଧୁ କରି ସିଦ୍ଧ କଲେ ଅଜାମର ହୋଇ ।
ଜଗନ୍ନାଥ ସେବକ ଯେ ଅଚ୍ୟୁତ କହଇ ॥
ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନ୍ନସସ୍ତୁ ବ୍ରହ୍ମବଦ୍ଧ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ ।

ଶ୍ରୀହରି ବୋଲନ୍ତି ଶୁଣ ଅର୍ଜୁନ । ମହାନ୍ତ ଆଶ୍ରେ କଲେ ହୋଏ ଜ୍ଞାନ ॥
ସଂସାରଯାକରେ ପୂର୍ଣ୍ଣ ମହାନ୍ତ । ତାର ଠହୁଁ ଏ ସୃଷ୍ଟି ଆଦ୍ୟକାନ୍ତ । ୧ ।
ଅର୍ଜୁନ ବୋଇଲେ ଭୋ ଜଗନ୍ନାଥ । କାହାକୁ ସେ ପୁଣ ବୋଲନ୍ତି ମହାନ୍ତ ॥
କାହିଁ ରହନ୍ତି ସେ କେମନ୍ତ ଜନ । କାହୁଁ ସେ କେମନ୍ତେ ହେଲେ ଉତ୍ପନ୍ନ ॥
କହନ୍ତି ହରି ଶୁଣ ପଣ୍ଡୁଶିଷ୍ୟ । ମହାଶୂନ୍ୟରୁ ମହାନ୍ତ ପ୍ରକାଶ । ୨ ।
ଅଶେଷ ବର୍ଣ୍ଣ ମହାନ୍ତ ଧଇଲା । କଳ୍ପଣାରୁ ଏ ସୃଷ୍ଟି ଜାତ କଲା । ୩ ।
ସ୍ଥାବର ଜଙ୍ଗମ କୀଟାଦି କରି । କରୁଛନ୍ତି ଲୀଳା ସୃଷ୍ଟିକି ଆବୋରି । ୪ ।
ମହାନ୍ତ ରହନ୍ତି ଯୋଗକୁ ଧେନ । ଯୋଗରେ ଚିନ୍ତା ମହାନ୍ତକୁ ଚିହ୍ନି ॥
ଯୋଗପୁରୁଷ ମୁଖୁଁ ପଞ୍ଚବେଦ । ପଞ୍ଚଭୂତ ପଞ୍ଚବେଦରେ ଭେଦ ॥
ଯୋଗରୁ ଜନ୍ମ ଅମ୍ବିକା ମହିମା । ଅଯୋନିସମ୍ଭୂତ ଯେଉଁ ପ୍ରତିମା ॥
ସେ ଭବଦ୍ୱାର ନାହିଁ ଅବକାର । ଦେଖି ମହା ପୁରୁଷ ଚମତ୍କାର ॥
ଅଙ୍ଗୁଷ୍ଠି ଧେନ କାଟି ଭବଦ୍ୱାର । ତହୁଁ ଜାତ ବ୍ରହ୍ମା ବିଷ୍ଣୁ ଶଙ୍କର ॥
ଏରୂପେ ତ୍ରିଗୁଣ ହେଲେ ସଂଜାତ । ଏଥୁଁ ଜନ୍ମିଲା ଅଶେଷ ଜଗତ ॥
ଶୁଣିଲୁଁ କି ପାର୍ଥ କହିଲି ତୋତେ । ଆଉ କଥା ଥିଲେ ପଚାର ମୋତେ ॥
ଶୁଣି ଅର୍ଜୁନ କୃତ କୃତ ହୋଇ । ଆନନ୍ଦ କଥାଏ ପଚାରିବାଇଁ ॥
ପଞ୍ଚ ବେଦ କଥା କହିଲ ମୋତେ । ସେ ପୁଣ କାହିଁ ରହିଲା ଗୁପତେ ॥
ଚାରିବେଦ ପୁଣ ରହିଲା କାହିଁ । କେ କାହାକୁ କେଉଁ ଠାବରେ ଥାଇ ॥
ଶ୍ରୀହରି କହନ୍ତି ଶୁଣ ବରଷି । ଗୁପତ ହୋଇ ଚାରିବେଦ ଅଛି ॥
ତୋତେ କହିବା ପଞ୍ଚବେଦ କଥା । ତାହା ସେ ଜାଣନ୍ତି ଯେ ପଞ୍ଚମଥା ॥
ପଞ୍ଚବେଦ ପାର୍ଥ ଯାହାକୁ କହି । ମହାନ୍ତ ଯୋଗପୁରୁଷ ଠି ସେହି ॥
ହାତ ନୋହିବାରୁ ସେ ଅନ୍ତର୍ହିତ । ଊର୍ଦ୍ଧ୍ୱମୁଖେ ଯୋଗ ସାଧିଇ ତହିଁ ॥
ଏବେ ଶୁଣ ଚାରିବେଦ ଆଖ୍ୟାନ । ତାହା ଜାଣନ୍ତି ଚତୁର ବଦନ ॥
ଚାରି ବେଦ ଚାରି ବଦନେ ରୂନ୍ଧି । ବ୍ରହ୍ମଗାୟତ୍ରିକି ତହିଁରେ ଛନ୍ଦି ୫
ନିରାକାର ବ୍ରହ୍ମ ଏମନ୍ତ କଲେ । ଚାରିବେଦ ବ୍ରହ୍ମାଙ୍କୁ ସମର୍ପିଲେ ॥

ବେଦ ଯେଣେ ବ୍ରହ୍ମା ପାଞ୍ଚିଲା ଛନ୍ଦ । କର୍ମେ ଅଟଇ ସଂସାରବନ୍ଧ ।
ତ୍ରିଯୁଗରେ ରହିବ ମହିମା । ଅପୂଜା ହେବ କଳିଯୁଗେ ବ୍ରହ୍ମା ।
ନିରାକାର ବ୍ରହ୍ମ ଏମନ୍ତ ଭଣି । ତୋ ଆଗେ କହିଲି ପଣ୍ଡୁର ଶିଷି ।
ପୁଣି ପଚାରଇ ପାଣ୍ଡୁ କୁମର । କାହିଁରେ ଯୋଗୀ ଲୟ ସୂତ୍ରଧାର ।
ଏହା କହିବା ମୋତେ ମହାବାହୁ । ଶୁଣିକର ମୋର ସଂଶୟ ଯାଉ ।
ଶ୍ରୀହରି କହନ୍ତି ଯୋଗ ବିଚାର । ଯେଉଁ ଯୋଗରୁ ଏ ସଚରାଚର ।
ଏ ଯୋଗ ଅବ୍ୟକ୍ତ ଅଟଇ ବୀର । ଏହା ଜାଣେ ଭକ୍ତଯୋଗୀ ମୋହର ।
ଏହି ବ୍ରହ୍ମଯୋଗ ଲୟ ସୂତ୍ରରେ । ଜାଗି ରହି ଯୋଗୀ ଖେଳେ ଶୂନ୍ୟରେ
ଏହି ଯୋଗ ଅଭ୍ୟାସ କଲେ ହେ ବୀର । କର୍ମବନ୍ଧରୁ ହୋଇବ ନିସ୍ତାର ।
ଶ୍ରୀଜଗନ୍ନାଥ ଶ୍ରୀମୁଖ ବଚନ । ଜ୍ଞାନପ୍ରଦୀପ ଏ ଗୀତା ଲିଖନ ।
ଶ୍ରୀଜଗନ୍ନାଥ ପାଦଅରବିନ୍ଦ । ଧ୍ୟାଇଣ କହଇ ଅଚ୍ୟୁତାନନ୍ଦ ।୩୫।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାସୁ ସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣଅର୍ଜୁନସମ୍ବାଦେ ନାମ ପଞ୍ଚମୋଽଧ୍ୟାୟଃ ।

---

ଷଷ୍ଠ ଅଧ୍ୟାୟ ।

କହଇ ଅର୍ଜୁନ ଶୁଣ ଦାଶରଥି କଥାଏ କହଇଁ ତୋତେ ।
କେଉଁରୂପେ ଏ ସୃଷ୍ଟି କାହୁଁ ଜାତ ହେଲା ଆଜ୍ଞା ଦେବ ନାଥ ମୋତେ ।୧।
ମର୍ତ୍ତ୍ୟପୁର ବୋଲି କାହାକୁ କହନ୍ତି ସଂଶୟ ହୋଇଲା ମୋର ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ କେ କହ କେବଣ ପ୍ରକାର ।୨।
କହନ୍ତି ଶ୍ରୀହରି କହିବା ବସ୍ତୁର ଶୁଣ ତୁ ହେ ପଣ୍ଡୁସୁତ ।
ନିରାକାର ବ୍ରହ୍ମ ଶ୍ରୀଅଙ୍ଗ ମଳରୁ ମେଦାସୁର ହେଲା ଜାତ ।୩।
ସେହି ଅସୁରକୁ ମାରି ମହାପ୍ରଭୁ ମେଦମେଦା ଛିଅାଇଲେ ।
ହାଡ଼ ତା ତ୍ରାଣ ପୃଥିବୀ ମାଂସ ପୁଣ ମୁଁହୁଁ ବୃହୁଦାଗ ହେଲେ ।୪।
ମେଦାସୁର ମଳ ମହୀ ବୋଲାଇଲା ମୁକ୍ତାରେ ବନ୍ଧିଲେ ପ୍ରାଣୀ ।
ମହିବାରୁ ମର୍ତ୍ତ୍ୟପୁର ବୋଲାଇଲା କହିଲି ତୋତେ ବଖାଣି ।୫।

ଅର୍ଜୁନ ବୋଇଲେ ଶୁଣ ମହାପ୍ରଭୁ ଲଗିଲା ମୋତେ ସନ୍ଦେହ ।
ପୃଥ୍ୱୀତ ନ ଥିଲା ଜନ କାହିଁ ଥିଲା ଏହା ମୋତେ ନାଥ କହ ।୨।
ଶ୍ରୀହରି ବୋଲନ୍ତି ଶୁଣ ତୁ ତପସ୍ୱୀ ମହାବାହୁ କଲ୍ୟାଣରୁ ।
ଏକା ନାରାୟଣଙ୍କେ କୋଟି ଅବତାର ହେଲେ ଗଜ କାଷ୍ଠଠାରୁ ।୩।
ପ୍ରଥମେ ମହାପ୍ରଭୁଙ୍କ ନାଭିକମଳରୁ ସେ ବ୍ରହ୍ମା ହେଲେ ଜାତ ।
ସୃଷ୍ଟି ସର୍ଜନାକୁ ଚତୁର୍ବେଦ ଘେନି ତ୍ରିଗୁଣେ ବୀଜ ଜଗତ । ୪ ।
ବିଷ୍ଣୁ ପାଳନ୍ତ ଗୁଣକୁ ଘେନ ଜାତ ହେଲେ ବୈଷ୍ଣବାସ ହୋଇ ।
ସର୍ବ ବିନାଶ କରିବା ଗୁଣହେତୁ ଘେନି ରୁଦ୍ରନାମ ବହି । ୯ ।
ଅର୍ଜୁନ ବୋଲଇ ଶୁଣିମା ଦେବନାଥ ରହିଣ କହ ତଦନ୍ତ ।
ଆପେ ଜାତକଲେ ଆପଣେ ପାଳଲେ ଆପେ ନାଶିଲେ କେମନ୍ତ ।
କହନ୍ତି ଶ୍ରୀହରି ଶୁଣ ତଥ୍ୟ କହି ଶିବମନ୍ତ୍ର ପଞ୍ଚବେଦ ।
ଜୀବରୂପରେ ସଚରାଚର ସେ ଯେ ବ୍ୟାପିଲା କହନ୍ତି ଭେଦ । ୧୧ ।
ଯହୁଁ ଜନମିଲା ତହିଁରେ ରହିଲା ଗଲେ ରହିବ ସେଠାଇଁ ।
ଶୁଣିମାକୁ ବିନା ଐଶ୍ୱର୍ଯ୍ୟ ଲାଗୁଛି ବୁଝିଲେ ଅବୋଧ ନୋହି । ୧୨ ।
ଏ ଚତୁର ବେଦ ସଂସାର ଆଚରଲେ କର୍ମବନ୍ଧକୁ ସେ ଦେନ୍ତି ।
କାହୁଁ ଅଇଲା ଏ କାରୁ ପେ ରହିଛନ୍ତି କର୍ମବନ୍ଧନକୁ ଘେନି । ୧୩ ।
ପଞ୍ଚବେଦ ସେ ଯେ କୁଣ୍ଡଳନୀ ବୋଲି ମହାଶକ୍ତି ନାମ ତାର ।
ତ୍ରିପୁର ପୀଠ ସେ ବାଟ ଜଗିଥାଇ ହୋମୁହା ସର୍ପ ଘୋର । ୧୪ ।
ସେହିଠାରେ ଉଦେ ଅସ୍ତ ପୂର୍ବଗିରି ତିନି ଶୀରି ଏକ ଅଙ୍ଗ ।
ଗିରିଶୃଙ୍ଗ ପରେ ମାନସରୋବର ତହିଁ ଯେବେ ହେବୁ ସଙ୍ଗ । ୧୫ ।
ମାନସରୋବରେ ତା ତଳୁପାଣରେ ଅବନା ଫୁଲ ଫୁଟିଛି ।
ଅଷ୍ଟ ପାଖୁଡ଼ାରେ ସେ ଫୁଲ ନିର୍ମାଣ ତଳ୍ଳେ କର ହୋ ତପସ୍ୱୀ । ୧୬ ।
ସେହି ସରୋବର ମଧ୍ୟେ ଦ୍ୱୀପଦଣ୍ଡ ତହିଁପରେ ଚକ୍ର ସାଜେ ।
ତହିଁପରେ ଅନ୍ଧଧୂତ ବାନା ଉଡ଼େ ଯହିଁ ବଜେ ଦେବରାଜେ । ୧୭ ।
ଅର୍ଜୁନ ଶୁଣି କୃତକୃତ ହୋଇଲା ପୁଛଇ ସେ ଜ୍ଞାନସୀମା ।

କାହିଁ କାରୂପେ ବଜଯେ କର ଅବା ଦେବାଧିଶଜ ମହିମା । ୯ ।
ଅର୍ଜୁନ ଉଦାର ବଚନ ଶୁଣିଣ କହନ୍ତି ସ୍ୱରୂପ ବାଣୀ ।
ନୀଳକନ୍ଦ ମଧ୍ୟେ ରତ୍ନସିଂହାସନ ତହିଁ ବସେ ଚକ୍ରପାଣି । ୧୯ ।
ଗରୁଡ଼ଖମ୍ବ ପାରୁଶେ ଉଭା ହୋଇ ଚାହିଁଲେ ଶ୍ରୀମୁଖ ଦଶି ।
ଚତୁର୍ଦ୍ଧାରୂପ ଚାରିକଳା ଯେଣେ ଚଉଦ ଭୁବନ ପ୍ରକାଶି । ୧୦ ।
ଯହିଁରେ ଗାୟତ୍ରୀ ପାବକ୍କ ହୋଇଛି ଚାରିବେଦ ଚାରିଦ୍ୱାର ।
ଯୋଗମାୟା କୋଳେ କାଳକମଳରେ ଜ୍ୟୋତିରାନନ୍ଦ ବିହାର ।
ଇଁଅଳା ପିଁଅଳାକୁ ଅଂଧ୍ର ବର ଶିଖ ସୁନାଗରେ ମିଶି ।
ଶିବ ସିନ୍ଧୁ ମଧ୍ୟେ ଅନନ୍ତ ଶଯ୍ୟାରେ ଦେଖିବୁ ତୁ ବ୍ରହ୍ମବଣି । ୧୨ ।
ଏହିରୂପେ ଚତୁର୍ଦ୍ଦଶ ଭୁବନରେ ପୂରି ପ୍ରକାଶିଛି ରହି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଚାରିଖାନି ଅଛେ ସେହି । ୧୩ ।
ବୈଷ୍ଣବ ଛାଡ଼ି ନିର୍ମଳ ଆତ୍ମା ଯାର ତାକୁ ଏ ଜ୍ଞାନ ଅମୃତ ।
କୁଟିଳ ଲମ୍ପଟୀ ଦାମ୍ଭିକ କପଟୀ ସେମାନଙ୍କୁ ବିଷକୃତ । ୧୪ ।
ତୁ ଯେଣୁ ମୋହର ଜୀବଆତ୍ମା ପାର୍ଥ ତେଣୁ ମୁଁ କହିଲି ତୋତେ ।
ଗୁରୁ ଗୁପ୍ତବାଣୀ ତୋତେ ଯେ କହିଲି ଅମ୍ବା କର ଯେନ ଚିତ୍ତେ । ୧୫ ।
ତୋହର ଦେହ ଯେ ତୋତେ ଜ୍ଞାନଭାଣ୍ଡ ତହିଁ ଦେଖ ବୁଝ ମୁହିଁ ।
ଆଉ କି କହିବି ଏକଭାବେ ଭାବ ଏଥୁ ଜ୍ଞାନ ଆଉ ନାହିଁ । ୧୬ ।
ପାର୍ଥ ଶୁଣିକରି ସଂଶୟ ତୁଟିଲା ଚିତ୍ତରେ ହୋଇ ଆନନ୍ଦ ।
ଅଚ୍ୟୁତପାଦପଦ୍ମକୁ ଧ୍ୟାନେ ଜାଣି କହଇ ଅଚ୍ୟୁତାନନ୍ଦ । ୧୭ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୂକ୍ଷ୍ମୋପସତ୍ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟଃ ।

———

## ସପ୍ତମ ଅଧ୍ୟାୟ ।

ଶ୍ରୀକୃଷ୍ଣ ମୁଖକୁ ଅର୍ଜୁନ ଚାହିଁ । ବିନୟ ଭାବେ କୃତାଞ୍ଜଳି ହୋଇ ।
ବ୍ରହ୍ମପ୍ରଳୟ ହେଲା ଯେତେବେଳେ । ସବୁ ସଂହରିଲ କାରୁଣ୍ୟଜଳେ ।

ଅବର କଥାଏ କହ ଶ୍ରୀହରି । ଲୁଚାଇଅଛ ଛପାଁ ଗୋପ୍ୟ କରି ॥
ସେ କଥା ନାମ କହି ଦେବ ମୋତେ । ତେବେ ମୋ ମନେ ପାଇବି ପରତେ
ବ୍ରହ୍ମପ୍ରଳୟ ଯେ ହୋଇଣ ଗଲା । ସକଳ ଜୀବ ଜନ୍ତୁ ନାଶ କଲା ॥
ଦଶଲକ୍ଷ ଯୋଜନ ଅଛି ପଣେ । କାରୁଣ୍ୟଜଳ ଯେନା ଏତେ ଉଚେ ।
ଜୀବମାନଙ୍କ ହୋଇ କିଛି ନାହିଁ । ସେ ବେଳେ ନାଥ ଥିଲ ତୁମ୍ଭେ କାହିଁ
ଏହା ସେ ପ୍ରଭୁ କହିଦେବ ମୋତେ । ନ କହ ଲୁଚାଇଅଛ ଗୁପତେ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଅର୍ଜୁନ । କହିଦେବା ତୋତେ ଏଥି ବିଧାନ॥
ଯେବଣ ଦିନେ ବେଦବ୍ରହ୍ମ ମଲା । ବ୍ରହ୍ମାଣ୍ଡଯାକ ପ୍ରଳେ କ୍ଷୟ ଗଲା ॥
ସେ ଦିନେ ପାର୍ଥ ନୀଳଗିରି ସ୍ଥାନ । ଉତ୍ସର୍ଗ ଅଟେ ସହସ୍ରେ ଯୋଜନ ॥
କଳପବଟ ଯେ ସେହି ସ୍ଥାନରେ । କ୍ଷୟ ନ ଯାଇଁ ସେହି ପ୍ରଳୟରେ ॥
ସେହି ବଟପତ୍ରରେ ଅମ୍ଭେ ଥାଉଁ । ସେ ସ୍ଥାନଛାଡ଼ି କାହିଁକି ନ ଯାଉଁ ॥
ବ୍ରହ୍ମାଣ୍ଡ ପ୍ରଳେ ନାଶଯିବା କଥା । ଦେଖିଣ ଅମ୍ଭେ ପାଉଁ ବଡ଼ ବ୍ୟଥା
ତାହା ଶୁଣିକରି କହେ ଅର୍ଜୁନ । ସେ ତରୁ କେତେ ଉଚ୍ଚ ହୋଏ ପୁଣ
କେମନ୍ତ ଭାବେ ତହିଁ ତୁମ୍ଭେ ଥାଅ । କିରୂପେ ତହିଁ କେତେବେଳେ ଯାଅ
ଅର୍ଜୁନ ବଚନ ଶୁଣି ଶ୍ରୀପତି । ବୋଲନ୍ତି ଶୁଣ ହେ ପଞ୍ଚୁପନ୍ତି ॥
ଆମ୍ଭଙ୍କୁ ପୁଣ ତୁ ଯାହା ପଚାରୁ । ଅନନ୍ତ ମୂର୍ତ୍ତି ଅଟଇ ସେ ତରୁ ଏ
ବ୍ରହ୍ମାଣ୍ଡ ପ୍ରଳୟ ସମୟେ ପୁଣ । ଜଳ ଯେପରି ଦଶଲକ୍ଷ ଯୁଣ ॥
ଜଳକୁ ଛାଡ଼ି ବାରଯୁଣ ଯଞ୍ଚେ । ସେ ବଟ ବଢ଼ି ଯାଇ ଅଛଂ ଉଚେ ॥
ଆକାଶେ ଯାଇ ଲାଗିଥାଇ ଶିଖା । ସେ ବଟ ପରେ ଅମ୍ଭେ ଥାଉଁ ଏକା
ବୈକୁଣ୍ଠପୁର ନୀଳଗିରି ସ୍ଥାନ । ତହିଁ ସେ ବଟ ହୋଇଁ ଉତପନ ।
ସେ ବଟପତ୍ରେ ସୁଖଭୋଗ ଯେତେ । ବୈକୁଣ୍ଠ ସୁଖଭୋଗ ନୋହେ ତେତେ
ସେ ସ୍ଥାନ ପାପ ଭେଦାଭେଦ ନାହିଁ । ବ୍ରହ୍ମଶାପାଦି ନ ବାଧଇ ତହିଁ ॥
ଆମ୍ଭର ସେହୁ ବଡ଼ ପ୍ରୀତିସ୍ଥାନ । ଯହିଁ ଥିଲେ ତହିଁ କରୁ ବିଶ୍ରାମ ॥
ପୂର୍ବରୁ ଅମ୍ଭେ କରଅଛୁଁ ସତ୍ୟ । ପ୍ରସବେ ହାତ ହୋଇବା ତଦନ୍ତ ॥
ପ୍ରତିମାମାନ ଭଗ୍ନ ହୋଇଗଲେ । ସେ ସ୍ଥାନ ମୁହିଁ ନ ଛାଡ଼ଇ ଭଲେ ॥

ପବତ୍ର ସ୍ଥାନ ଅଟେ ସିନ୍ଧୁତଟ । ପାତାଳରୁ ଫିଟିଅଛୁ ସେଁ ବାଟ ।
ପୁଣି ବୃତ୍ତାନ୍ତ ବୋଲଇ ଅର୍ଜୁନ । କହ ସେ ବାଟ କେତେ ଉଚ୍ଚ ପୁଣ ।
ତହିଁରେ ତୁମ୍ଭେ କଲ ନାଜ ଠଣା । କପାଁ ତହିଁ ପାଣି ନୋହେ ଚୂର୍ଣ୍ଣ ।
ତେଣୁ ମୁଁ ତୋତେ ପଚାରୁଛୁ ହରି । ଏ କଥା ତତ୍ତ୍ୱ କହ ଫେଡ଼ିକରି ।
ପ୍ରଭୁ ବୋଇଲେ ଶୁଣ ପଣ୍ଡୁସୁତ । ତୁମ୍ଭ ଯେ ପଚାର ପାରୁ ଏ ତତ୍ତ୍ୱ ।
ସେ ଜଳ ଯେତେ ଦୂର ଖେଦି ଯାଇ । ବାଟ ଯେ ସେତେ ଦୂରକୁ ବଢ଼ଇ ।
ପ୍ରଳୟଜଳ ଛୁଟିଥାଇ ଯେତେ । ବାଟ ଉତ୍ସର୍ଗ ଛୁଟିଥାଇ ତେତେ ।
ସେ ଯାହା ମାଫିକରେ ଅଛି ରହି । ଶୁଣ ଅର୍ଜୁନ ମନ ଦେହୁ ଦେଇ ।
ମାନବବସ୍ତୁ ନିର୍ମିତରେ ହରି । ନାଭିରୁ ପଦ୍ମବୃକ୍ଷ ଜାତ କରି ।
ସେ ପଦ୍ମବୃକ୍ଷ ଗୋଟିକୁ ଯେ ଲକ୍ଷ । ବ୍ରହ୍ମାଣ୍ଡ ମଧ୍ୟେ ନାହିଁ ସମକକ୍ଷ ।
ସତୁର ସହସ୍ର ଯୋଜନ ଯେତେ । ପଦ୍ମର ନାଡ଼ ଗୋଟା ମୋଟ ତେତେ ।
ନବମ ଗୋଟି ଯେ ପାଖୁଡ଼ା ତହିଁ । ପାଖୁଡ଼ା ଗୋଟାକେ ଫୁଲ ଫୁଟଇ ।
ସେ ପଦ୍ମକେଶରେ ଆତ୍ମର ମନ । ବିଧାତା ରୂପେ କରାଇଲୁଁ ଜନ୍ମ ।
ବ୍ରହ୍ମା ଜନ୍ମ ହୋଇ ସର୍ଜି ଜଗତ । ଜଗନ୍ନାଥ ଧ୍ୟାୟି କହେ ଅଚ୍ୟୁତ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ ।

ଅର୍ଜୁନ ବୋଲଇ ଶୁଣ ଭାବଗ୍ରାହୀ ସଂଶୟ ହୋଇଲା ମୋତେ ।
ବ୍ରହ୍ମା ଜାତ ହୋଇ କେଉଁ କୃତ୍ୟ କଲେ ଅଜ୍ଞା ହେଉ ନାଥ ମୋତେ ।
ଶ୍ରୀହରି ବୋଇଲେ ଶୁଣ ହେ ଅର୍ଜୁନ ବ୍ରହ୍ମାପଦ ତାକୁ ଦେଲୁଁ ।
ସୃଷ୍ଟିର ଭିଆଣ ଏରୂପେ ହୁଅଇ ସେ କଥାମାନ ଯେ କହୁଁ ।୨।
ଅମର ମର୍ତ୍ତ୍ୟ ପାତାଳ ତିନିପୁରେ ରଚିଦଭୁବନେ ଛିତା
ସ୍ୱର୍ଗଲୋକ ନାଗଲୋକ ମର୍ତ୍ତ୍ୟଲୋକ ସବୁଙ୍କର ସେହୁ ପିତା ।୩।
ସକଳ ଲୋକଙ୍କୁ ସଞ୍ଜୀବନୀ ମନ୍ତ୍ରେ ଜାତ କଲା ଯେ ଜଗତ ।

ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଗୃହଖାନ ଏ ସମସ୍ତ । ୪ ।
କାରୁଣ୍ୟଜଳ ପ୍ରଳୟ କରଇଲ ଯହୁଁ ଅସିଥିଲା ପୁଣ ।
ବର୍ଷ୍ଣ ଛନ୍ଦ ତାର କଛୁ ନ ଦିଶଇ ତହିଁ ଯାଇଁ ହେଲା ଲୀନ । ୫ ।
ଯେଉଁ ବସ୍ତୁରୁ ଯେହ ଆସିଥିଲାକ ସେହ ବସ୍ତୁରେ ପଶିଲା ।
ସେହ ବଟ ମୂଳ ସପ୍ତଦ୍ୱୀପ ଶୋଷ ପ୍ରଳୟେ ତହିଁ ମିଶିଲା । ୬ ।
ବ୍ରହ୍ମା ଯେ ଭ୍ରମଣ ଜଗତରେ କଲା ସ୍ଥାବର କୀଟାଦି ଜନ ।
ସକଳ ଜନ୍ତୁର ଯେ ଯେଉଁ ବିଧାନ ଯାକୁ ଯେଉଁ ଭାବମାନ । ୭ ।
ଯାହାର ଯେମନ୍ତ ତାହାଙ୍କୁ ନିର୍ମାଣ କରଇଁ ସମ୍ଭାଳିବେ ।
ମେରୁ କନ୍ଦର ଗୁହ୍ୟବନ ପାତାଳେ ନେଇଁ ଥୋଇ ଠାବେ ଠବେ ।
ଏମନ୍ତ ପ୍ରକାରେ ବ୍ରହ୍ମାଣ୍ଡ ରଚନା କରୁଥାଇ ତାହା ବିଧି ।
ସେହି ପ୍ରକାରରେ ସର୍ବ ଜନ୍ତୁ ଠାରେ ରହିଥାଇ କର୍ମ ସାଧି ।
ମାନବବଶ୍ଚି ପିନା ଅଚ୍ୟୁତ ବୋଲଇଁ ବ୍ରହ୍ମାଣ୍ଡ ପାଳକନାଥ ।
ତୁ ଯେ ପୃଚ୍ଛାକଲୁ ଏଥୀତା ବିଧ ନ ଶୁଣିଲୁ ଟିକ ହୋ ପାର୍ଥ ।
ଅର୍ଜୁନ ବୋଲଇ ଶୁଣ ଦେବହରି କଥା ଏ ପୁଚ୍ଛଇଁ ତୋତେ ।
ଏ ସୃଷ୍ଟି ପାତନା କେଉଁ କଥମାନ ଆଜ୍ଞା ଦେଉ ନାଥ ମୋତେ ।
କେଉଁ ଯୁଗରେଟି କଳ କଥାମାନ ଜାଣଇଁ ଏଥି ଭାରତା ।
କେଉଁ ଯୁଗରେ କେଉଁ ଭେଦମାନ ଯେ କିରୂପେ କେଉଁ ବାବସ୍ଥା ।
ଶ୍ରୀହରି ବୋଲନ୍ତି ଶୁଣ ହୋ ଅର୍ଜୁନ କହୁଅଛି ମୁଁ ତୋତେ ଯାହା ।
ଅପ୍ରତେ ନ କର ସନ୍ତୋଷ ମନରେ ଶୁଣ ସୁଭଦ୍ରାର ନାହା ।
ଯେତେବେଳେ ଏହ ସପ୍ତଦ୍ୱୀପା ମହୀ ନ ଥିଲେ ଜୀବାଦି କେହ ।
ତହୁଁ ଥୋକାଏକ ଦିନାନ୍ତରେ ମହୀ ବୃକ୍ଷମୟ ସବୁ ହୋଇ ।।
ବଢ଼ିଲେ ଯେ ଯାହା ମୂଳେ ରସ ଦେଇ ଲାଗିଲେ ନକ୍ଷେତ୍ରମଣ୍ଡଳେ ।
ଲତା ଗହନ ଅଗମ୍ୟ ବନଭୂମି ଶେଷ ତନୋହରଣ ବଢ଼ିଲେ ।
କେଉଁ ବୃକ୍ଷ ପାଞ୍ଚ ଯୋଜନ ବଢ଼ିଲା କେ ବଢ଼ି ଦେଲ ଯୋଜନ ।
କାର କାୟା ଛଅ ଯୋଜନ ବଢ଼ିଲା ଗୃହ ଯୋଜନ ପ୍ରମାଣ ।।

କାହାର ଡାଳ କୋଡ଼ି କୋଡ଼ି ହୋଇଣ ଶାଖାମାନ ପଲ୍ଲବଲେ ।
ଯେଣିକ ଗ୍ରହିଲେ ଆନ କଛୁ ନାହିଁ ସବୁହିଁ ବୃକ୍ଷ ଦଶିଲେ ॥
ସେ ଯୁଗ ଗୋଷ୍ଠୀ ଏହିମନ୍ତେ ନାଶିଲା ଶୁଣ ଭୁ ହୋ ପଣ୍ଡୁସୁତ ।
ପୁଣି ତହୁଁ କଛୁ ଦନାନ୍ତେ ବ୍ରହ୍ମାଣ୍ଡ ମଧ୍ୟେ ପୂରିଲା ପର୍ବତ ॥
ସତେ ଯୋଜନ ଲମ୍ବ କେଉଁ ପର୍ବତ ବେନିଶତ କେ ଆରମ୍ଭ ।
କେହୁ ଚ୍ୟାରିଶତ ଯୋଜନ ବଢ଼ିଲା କେହୁ ଛନଶତ ଲମ୍ବ ॥
ଏମନ୍ତେ ପର୍ବତ ପୂରିଗଲା ମହୀ ଆନ ଜନ୍ତୁ କେହି ନାହିଁ ।
ଏ ଯୁଗ ଗୋଷ୍ଠୀ ଏହିମନ୍ତେ ଗଲା ଯେ ଆନ ଯୁଗ ପୁଣ ହୋଇ ॥
ତହିଁ ଉତ୍ତାରେ ଯେ ବ୍ରହ୍ମାଣ୍ଡ ମଧ୍ୟରେ ତୃଣମାନ ଉପୁଜିଲା ।
କେ ବଢ଼ିଲା ଶତହାତ କେ ସହସ୍ର ଜଗତଯାକ ପୂରିଲା ॥
ତୃଣ ବ୍ୟବକେ ଆନ ନାହିଁ ମହୀରେ ଏହା ଦେଖିଅଛୁ ମୁହିଁ ।
ସେ ଯୁଗ ଗୋଷ୍ଠୀ ଏହିମନ୍ତେ ଗଲାଟି ଶୁଣ ଭୁ ସୁଭଦ୍ରାସାଇଁ ॥
ଆର ଯୁଗ କଥା କହିବା ହୋ ତୋତେ ଶୁଣ ଭୁ ଯୁଧିଷ୍ଠି ଭାଇ ।
ବାଲି ବ୍ୟବକେ ହୋ ବ୍ରହ୍ମାଣ୍ଡ ମଧ୍ୟରେ ମାଟି ବୋଲି କଛୁ ନାହିଁ ॥
ତଳମାତରକ ମାଟି ତଳସିଲେ ବାଲି ବନା ମାଟି ନାହିଁ ।
ସେ ଯୁଗଟି ଏହିମନ୍ତେ ଯେସ୍ତୁ ଗଲା ପୁଣି ଅଗ୍ନିମୟ ମହୀ ॥
ଦଶସହସ୍ର ବରଷ ବିତିଗଲା ସେ ଅଗ୍ନିଟି ଜଳୁଥିଲା ।
ପୁଣି ସେ ମେଦିନୀ ଯୁଗ ଭୁଇ ଭକ ପାଉଁଶ ହୋଇ ରହିଲା ॥
ଜନ ମନୁଷ୍ୟ ନ ଥିଲେ ସେ ବେଳରେ ତାହା ଦେଖିଅଛୁ ବୃନ୍ଦୋଳେ ।
ଏମନ୍ତେ କଛୁ ଦନାନ୍ତରେ ପୁଣି ଯେ ପିମ୍ପୁଡ଼ି ମହୀ ପୂରିଲେ ॥
ସେ ଯୁଗ ଗୋଷ୍ଠୀ ଏହିମନ୍ତେ ଗଲାଟି ପୁଣି ଧେନୁ ହେଲେ ଜାତ ।
ଆନ ଜନ୍ତୁମାନ କଛୁହିଁ ନାହାନ୍ତି ଧେନୁ ପୂରିଲେ ଜଗତ ॥
ସେ ଯୁଗଗୋଷ୍ଠୀ ଏହିମନ୍ତେ ଗଲାଟି ଆଉ ସ୍ୱଗେ ହସ୍ତୀମୟେ ।
ବ୍ରହ୍ମାଣ୍ଡଯାକ ପୂରି ଯୋଡ଼ିଟି ରହିଲେ ବର୍ଷ ଅଶୀଲକ୍ଷ ଯାଏ ॥
ସେ ଯୁଗଗୋଷ୍ଠି ସହୁଁ ହତ ହୋଇଲା ଆନଯୁଗେ ଅଶ୍ୱ ଜାତ ।

ଦଶଲକ୍ଷ ବର୍ଷ ଯାଏ ପୁଣ ସେହ ଅଣ୍ଡ ମୂଇଲେ ଜଗତ ॥
ସେ ଯୁଗଗୋଷ୍ଠା ଭୋଗ ହୋଇ ଗଲା ଯେ ପୁଣ ହେଲା ଆର ଯୁଗ ।
ତାହା କହବା ତୋତେ ଶୁଣ ହେ ପାଥ ବ୍ୟାଘ୍ର ଭାଲୁ ଖଗ ମୃଗ ॥
ଜନ୍ତୁ ଜାତକେ ସେ ଯୁଗ କଲେ କ୍ଷୟ ଭୋଗ କଲେଁ ଏ ମନ୍ତ୍ରୀ ।
ପତଙ୍ଗ ଭୁଜଙ୍ଗ କ ଆଦ ଯେତେକ ଛପନାକୋଟି ଜୀବହିଁ ॥
ଯେଉଁ ଯୁଗରେ ଯେତେ ଜାତ ହୋଇଲେ ସମସ୍ତେ ହୋଇଲେ ଲୀନ ।
ଏବେ କହବା ତୋତେ ଶୁଣ ହେ ପାଥ ମାନବ ଜନ୍ମ ବଧାନ ॥
ସ୍ଥାବର ଜଙ୍ଗମ କୀଟ ଭୃଙ୍ଗନାନା ନ ଜାଣନ୍ତ ଶାସ୍ତ୍ରପାଠ ।
ମାନବ ଶରୀରେ ସମସ୍ତ ଜାଣନ୍ତ ଛପନକୋଟିରୁ ଶ୍ରେଷ୍ଠ ॥
ଯେତେକ ବୃକ୍ଷ ଓ ଯେତେକ ଜନ୍ତୁ କୃତ୍ୟ ଏହ ଲୀଳା ଯେ ସଂସାର ।
ସମସ୍ତଙ୍କୁ ଭୋଗ ମାନବ କରଇ କହଲ ତୋର ଆଗର ॥
ଯାତ୍ରା ତୀର୍ଥ ଯେତେ ବ୍ରତ ବଦ୍ୟମାନ ସବୁ ମାନବ କରଇ ।
ମାନବ ମାନଙ୍କେ ହରେରାମକୃଷ୍ଣ ନାମ କେହ ନ ଧରଇ ॥
ଜଗତ ଅଷ୍ଟାଳ ଦଣ୍ଡସିଂହାସନ ଛତ୍ର ଚ୍ଛମର ନୃପତ ।
ଦୁଃଖ ସୁଖ ହାନ ଲାଭ ନର ବନା କେହ ଭୋଗ କରେ କ୍ଷିତ ॥
ଏହ ସେ ସାମନ୍ତ ସେବକ ଅଛଇ ଏହ ସମୁଦ୍ର ବ୍ରାହ୍ମଣ ।
ଏହ ଦାନ ଦଏ ଏହ ଦାନ ନଏ ଏହ ସେ କରେ କାରଣ ॥
ଏହ ଯେ ସଂସାରେ ସେବକ ଅଛଇ ଏହ ଯେ ଗୁରୁ ଗୋବନ୍ଦ ।
ଜଗନ୍ନାଥ ପାଦପଦ୍ମ ଆଶ୍ରେ କର କହଇ ଅଚ୍ୟୁତାନନ୍ଦ ॥

ଇତ ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନସସ୍ତ ବ୍ରହ୍ମବଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟଃ ।

———

ନବମ ଅଧ୍ୟାୟ ।

କହଇ ଅର୍ଜୁନ କରଯୋଡ଼ ମହାବାହୁ ।
ପୃଚ୍ଛବ କଥାଏ ମୋତେ ପ୍ରଭୁ ଆଜ୍ଞା ହେଉ ॥

ଥୋକାଏକ ଲୋକ ଯୋଗମାର୍ଗରେଣ ପଶି ।
ସାଧୁଥାନ୍ତି ବ୍ରହ୍ମଜ୍ଞାନ ଆରମ୍ଭରେ ବସି । ୨ ।
ବଗ୍ରନ୍ତି ଆନ ଆନ କଥା ହୃଦସ୍ଥରେ ।
ପ୍ରକୃତ ବଶରେ ପଡଥାନ୍ତି ନିରନ୍ତରେ । ୩ ।
ଏମନ୍ତ ଲୋକ କେମନ୍ତ ଗତିକି ସେ ପାଇ ।
ଆଜ୍ଞା ହେଉ ଶ୍ରୀମୁଖରେ କମଳାର ସାଇଁ । ୪ ।
ଶ୍ରୀହରି ବୋଇଲେ ଯାହା ପୁଚ୍ଛିଲୁ ତୁ ମୋତେ ।
ସାବଧାନ ହୋଇ ଶୁଣ କହିଦେବା ତୋତେ । ୫ ।
ଶୁଣ ଅର୍ଜୁନ ଶ୍ରବଣେ ସେହି କଥାମାନ ।
ମନ ଆପଣାର କରି ହେବୁରେ ତୁ ଧେନ । ୬ ।
ଯେଉଁ ଯେଉଁ ଲୋକ ଯୋଗମାର୍ଗରେ ପଶନ୍ତି ।
ବିତର୍କ ଶୀତଳ ଭାଷା ମନରେ ଭାଷନ୍ତି । ୭ ।
ଅକର୍ମ ବିଦ୍ୟାର ଧନ ବଢ଼ନ୍ତି ଯେ ଶୁଣ ।
କହି ନୁହଇ ତାହାଙ୍କ ମହିମା ଯେ ଗୁଣ । ୮ ।
ମିଥ୍ୟା ଆରମ୍ଭେଣ ବସି କରଇ ସାଧନ ।
ତାକୁ ଜାଣିବୁ କପଟୀ ଦାମ୍ଭିକ ସେ ଜନ । ୯ ।
ହୃଦସ୍ଥ ଅଶୁଭ ଆତ୍ମା ଶୁଚିବନ୍ତ ନୋହି ।
ଯେତେ ଯୋଗ ଧର୍ମ କଲେ ମୁକ୍ତି ତାଙ୍କୁ କାହିଁ । ୧୦ ।
ଅମୃତଭାଣ୍ଡେରେ ଯେହ୍ନେ ସୁରା ପକାଇଲେ ।
ନାଶ ଯାଇ ଏମନ୍ତ ସେ ତେମନ୍ତ ଏ ହଲେ । ୧୧ ।
ତାର ଯୋଗ କର୍ମ ଯେତେ ସେହି ପରକାରେ ।
ଅଜ୍ଞାରଣ ଧର୍ମ ସେ କାରଣ ନୋହେ ତାରେ । ୧୨ ।
ଆହୁର କଥାଏ ଶୁଣ କହିଦେବି ତୋରେ ।
ମୋହ ନାମକୁ ଯେ ବିଶ୍ୱାସରେ ଧ୍ୟାନ କରେ । ୧୩ ।
ସ୍ୱାପନ୍ନ ହୁଅଇ ତାକୁ ଫଳ ହୋ ନିଶ୍ଚିତ ।

କେବେହେଁ ଅନ୍ୟାସେ ନାଶ ନୋହେ ଯେଣୁ ଲୋକ ।୧୪
କୀର୍ତ୍ତି ପ୍ରୀତରେ ପ୍ରବର୍ତ୍ତି ଆନ୍ତି ନାନାଠାରେ ।
ତତ୍ତ୍ୱ ଦେଇଥାଇ ନତ୍ୟେ ମୋ ପାଦପଦ୍ମରେ । ୧୫
ସବୁ କର୍ମ ଯୋଗ ଭକ୍ତି କଲା ତାର ହୋଇ ।
ଇନ୍ଦ୍ରାଦି ପଦ ତାହାକୁ ତୁଚ୍ଛ ଯେ ଦିଶଇ । ୧୬ ।
ଏ ମୋହର ଭାବ ଭକ୍ତି ନ ଜାଣନ୍ତି ଯେହୁ ।
ବଣା ହୋଇଁ ମରୁଥାନ୍ତି ଜ୍ଞାନ ଯେ ହରାଇ । ୧୭ ।
ମୋହର ତହୁଁ ଜାତ ଯେ ହେଉଛି ଜଗତ ।
ନ ଜାଣନ୍ତି କେହୁ ମୋର ପରମ ଯେ ତତ୍ତ୍ୱ । ୧୮ ।
ବାରିନିଧି ଜଳରୁ ଯେସନେ କମ୍ପ ଜାତ ।
ତରଙ୍ଗ ଲହରୀ ତହୁଁ ହୁଅଇ ଉଦ୍ଭୂତ । ୧୯ ।
ଜଳ ଲହରୀରୁ ଯେହ୍ନେ ଜନ୍ମ ହୋଏ ଫେନ ।
ସୃଷ୍ଟି ଜାତ ହୁଅଇ ଯେ ମୋ ତହୁଁ ତେସନ । ୨୦ ।
ଏ କଥାମାନ ମୋହର ନ ଜାଣନ୍ତି କେହୁ ।
ମତିଭ୍ରମ କରି ନାଶ ହୁଅନ୍ତି ଟି ସେହୁ । ୨୧ ।
ଯେହ୍ନେ ବଡ଼ କାଳେ ପ୍ରାଣୀ ଗମନ କରନ୍ତି ।
ବାଟେ ରଜ୍ଜୁ ଦେଖି ସର୍ପ ବୋଲିଣ ଡରନ୍ତି । ୨୨ ।
ନୁହଇ ସତ ନିକର କଢ଼ିଣ ଦେଖିଲେ ।
ନବଲେ ଯେସନେ ଚର୍ମେ ମୃଗତୃଷ୍ଣା ଖେଳେ । ୨୩ ।
ତେତେକ ପ୍ରାୟେ ଅଟି ପାର୍ଥ ଏ ଜଗତ ମାୟା ।
ଆତ୍ମା ତୃଷ୍ଣାବନ୍ତେ ଦେଖି ନାଶ ଯାଏ କାୟା । ୨୪ ।
କହିଲି ଏ ହେତୁ ବୁଝି ଦେନ ତୋର ମନେ ।
ପ୍ରବୃତ୍ତି ନିବୃତ୍ତି ବେନି ଶାସ୍ତ୍ର ଏ ଶ୍ରବଣେ । ୨୫ ।
ଅର୍ଜ୍ଜୁନ ବୋଲଇ ପ୍ରଭୁ ଫେଡ଼ିବା ସନ୍ଦେହ ।
ଜ୍ଞାନ ସାଧିବାର ବାଟ କେମନ୍ତ ତୁ କହ । ୨୬ ।

ଆଜ୍ଞା ହେଉ ମୋତେ ଏହା କମଳାର ସାଇଁ ।
ଏମନ୍ତେ ମନକୁ ମୋର ପ୍ରଗାଢ ଆସଇ । ୨୭ ।
ଶ୍ରୀହରି ବୋଇଲେ ପାର୍ଥ ଘେନ ମୋ ବଚନ ।
ବା ଯେବେ ଅଛୁ ତୋର ବୁଝିବୁ ଏ ଜ୍ଞାନ । ୨୮ ।
ଯାହା ମୁଁ କହୁଅଛି ଆଜ୍ଞା ପ୍ରତିପାଳ ଥିବୁ ।
ସବୁ କଥା ଭଲ ପାର୍ଥ ଯେବେ ତୁ ଘେନିବୁ । ୨୯ ।
ଧର୍ମ ନାଶ ଯାଏ ପାର୍ଥ ଅପ୍ରତେ ଯେ କଲେ ।
ପୁଣି ଦୋଷ ଦେବୁ ପଛେ ନ କହିଣ ଥିଲେ । ୩୦ ।
ବ୍ରହ୍ମଜ୍ଞାନ ଜ୍ଞାନବ୍ରହ୍ମ ନୁହଇ ଏ ହୁର ।
ଗୁପତ ହୋଇ ରହିଛି ମନ୍ଦରେ ତୋହର । ୩୧ ।
କହିଦେବା ପାର୍ଥ ତେ ତେ ଧର ତୁ ଆସନ ।
ପୂର୍ବ ଖଣ୍ଡ ପଶ୍ଚିମରେ ବଳାଅ ତୋ ମନ । ୩୨ ।
ଯଳଖ ତୋ ମେରୁଦଣ୍ଡ ଖୋଜ ଯେ ଡମ୍ବରୁ ।
ଅର୍ଗଳ ପକାଇ ରଖ ଘଣ୍ଟିକାଦୁଆରୁ । ୩୩ ।
ନାସା ଅଗ୍ରତରେ ଦୃଷ୍ଟି ରଖ ତୁ ଲଗାଇ ।
ଅସ୍ତ୍ରେ ଅସ୍ତ୍ରେ କର ତୁହି ମନକୁ ବଳାଇ । ୩୪ ।
ପବନ ଆଯୃତ୍ତ ହେଲେ ମନ ଯେ ଆଯୃତ୍ତ ।
ତୋତେ ମୁଁ କହୁଛି ବ୍ରହ୍ମଜ୍ଞାନର ଏ ତତ୍ତ୍ୱ । ୩୫ ।
ଶୁଣିମା ଶ୍ରୀହରି ବୋଲ ବୋଲଇ ଅର୍ଜୁନ ।
କିପାଁ ଏକଦୃଷ୍ଟି କର ଏ ମନପବନ । ୩୬ ।
ନାସିକା ଅଗ୍ରକୁ କିପାଁ ତଳେ କରିଥିବା ।
ଏ କଥା ସନ୍ଦେହ ମୋତେ ଫେଡ଼ିଣ କହିବା । ୩୭ ।
ଶୁଣ ତୁ ଅର୍ଜୁନ ବୋଲି ବୋଲନ୍ତି ଶ୍ରୀହରି ।
ତହିଁର ଗୁଣ କହିବା ତୋତେ ଯେ ବିସ୍ତାରି । ୩୮ ।
ନାସା ଅଗ୍ରେ ମନ ଦୃଷ୍ଟି ଦେଇଣ ବସିଲେ ।

ମନ ଅମନ ହୁଅଇ ଯୋଗରେ ମିଶିଲେ ॥
ନାଦବିନ୍ଦୁ ଖଞ୍ଜି ତହିଁ ପଡଇ ବନ୍ଧନ ।
ସଂସାର ଧାରଣା ନିରଞ୍ଜନକୁ ବନ୍ଧନ ॥
ଇନ୍ଦ୍ରିୟମାନଙ୍କରୁ ସେ ବଲଗ ହୁଅଇ ।
ପ୍ରକୃତିମାନଙ୍କୁ ସବୁ ଅନର୍ଳେ ଦହଇ ॥
ଏମନ୍ତ ଭାବରେ ଯେହୁ ଜଳାବନ୍ତ ମନ ।
ବିଶୁଦ୍ଧାତ୍ମା ବୋଲି ତାକୁ ବୋଲନ୍ତି ଅର୍ଜୁନ ॥
ଇନ୍ଦ୍ରିୟମାନଙ୍କ ସଙ୍ଗେ ମନ ବଶ ହୋଇ ।
ଅଶୁଦ୍ଧାତ୍ମା ବୋଲି ତାକୁ ତହିଁ ନାଶ ଯାଇ ॥
ମନ ପବନ ଯାହାର ସ୍ତମ୍ଭୀଭୂତ ହୋଇ ।
ନିଶ୍ଚୟେଁ ପରମପଦକୁ ସେ ପୁଣ ପାଇ ॥
ଯହିଁ ଥିଲେ ତହିଁ ଦୃଷ୍ଟି ତାହାର ସେ ରହି ।
ସେହିଠାରୁ ଅନୁଭବ ପ୍ରକାଶ ହୁଅଇ ॥
ତୋତେ ମୁଁ କହିଲି ଯାହା ସତ୍ୟ ଏ ବଚନ ।
ଏ କଥା ନ କହିଲେ ଜାଣି ନୁହଇ ଜ୍ଞାନ ॥
ଏକାଗ୍ର କରିଣ ନାସା ଅଗ୍ରରେ ଯା ଦୃଷ୍ଟି ।
ଲଗିଥିଲେ ତାହା ମୁଖେ ଫିଟଇ କବାଟି ॥
ପବନ ଆୟତ୍ତ ହେଲେ ଆତ୍ମାକୁ ଜାଣଇ ।
ଗୁରୁ ଉପଦେଶ ପାର୍ଥ ସେବିଲେଟି ପାଇ ॥
ଗୁରୁ ଜଗନ୍ନାଥ ଦୁଇ ଏକଇ ଯେ ମତ ।
ଶ୍ରୀଗୁରୁ ଚରଣେ ଧ୍ୟାୟି କହଇ ଅଚ୍ୟୁତ ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୂପନସସ୍ତୁ ବ୍ରହ୍ମବଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ନବମୋଽଧ୍ୟାୟଃ ॥

ଦଶମ ଅଧ୍ୟାୟ ।

ଅର୍ଜୁନ ବୋଲଇ ଶୁଣ ଶ୍ରୀହରି । ପୁଛଇ କଥାଏ କହ ବିସ୍ତାରି ।୧।
ଷଡ଼ଚକ୍ର ବୋଲି କେମନ୍ତ କହାଇ । ତାହା କହିବା ମୋତେ ଉବଗାହି
କେମନ୍ତ ପ୍ରକାରେ କେଉଁ ଭୁବନ । ଦେହ ବନ୍ଧ ଗୋଷ୍ଠୀ କହିଲ ରଚନା ॥
ଶ୍ରୀହରି ବୋଇଲେ ଶୁଣ ବବସ୍ତି । ଷଡ଼ଚକ୍ର କଥା କହୁଅଛି ବାଛି ।୪।
ଗୁହ୍ୟାଚକ୍ରକୁ ଯେ ଆଧାର କହି । ଚ୍ୟାରି ଅକ୍ଷର ସେ ସ୍ଥାନେ ବସଇ ॥
ବ ଶ ସ ଷ ବୋଲି ଯେ ଚ୍ୟାରିଅକ୍ଷର । ଆରକ୍ତବର୍ଣ୍ଣ ଦିଶଇ ଚକ୍ର ।୬
ସେ ଚକ୍ରେ ବସନ୍ତି ଦେବ ଗଣେଶ୍ୱର । ବକ୍ରତୁଣ୍ଡ ଦେବ ଯୋଗ ସଙ୍ଗର ॥
ଯାନ ବାହନ ଅଟଇ ଇନ୍ଦୁର । ଏକୁଁ ମହିମା ଅଟଇ ଅପାର ।୮।
ତାଥିପରେ ଲିଙ୍ଗଚକ୍ର ବସଇ । ଛଅପାଖୁଡ଼ା ଯହିଁ ଫୁଟିଥାଇ ।୯।
ସିନ୍ଦୁରବର୍ଣ୍ଣ ଯେ ଚକ୍ରର ଜ୍ୟୋତି । କାମଦେବଙ୍କ ରୂପ ସ୍ଥାନେ ଅଧିପତି ॥
କାମାକ୍ଷୀ ଦେବୀ ଯେନା ସଙ୍ଗତରି । ହର୍ଯ୍ୟକ୍ଷ ବାହନ ଅଟେ ତାଙ୍କର ॥
ଛଅଅକ୍ଷର ସେ ସ୍ଥାନେ ବସଇ । ବ ଭ ମ ଯ ର ଲ ଛଅ ବୋଲାଇ
ତୃତୀୟଚକ୍ର ନାଭିରେ ଯେ କହି । ଯହିଁ ଦେହାଦମାନ ସଞ୍ଚରଇ ॥
ପବନ ମୂଳସ୍ଥାନ ଅଟେ ସେହି । ଯହିଁ ଚୌଦଭୁବନ ସଞ୍ଚରଇ ॥
ବ୍ରହ୍ମା ଯେଉଁ ସ୍ଥାନେ ଗଢ଼ଇ ସୃଷ୍ଟି । ସ୍ତ୍ରୀ ପୁରୁଷ ମର୍କଟମଣି ପ୍ରାଏଟି ॥
ସେ ସ୍ଥାନେ ଅଛଇ ଅଗ୍ନିମଣ୍ଡଳ । ପାକ କରଇ ଆହାର ସକଳ ॥
ଦଶଦଳରେ ପଦ୍ମ ଫୁଟିଛଇ । ଦଶଅକ୍ଷର ସେ ସ୍ଥାନେ ବସଇ ।
ଦଶଗୋଟି ନାଡ଼ି ପଦ୍ମ ଆକାର । ପ୍ରବାହିକା ବୋଲି ନାମ ତାହାର ॥
ପାଦ ପାଣିକ ଗୃହ ନାଡ଼ି ଯାଇଁ । ବିନାଭି କଣ୍ଠକୁ ବେଢ଼ି ଅଛଇ ॥
ଇଅଁଳା ପିଅଁଳା ଶିଶୁମ୍ନା ନାଡ଼ି । ବହଇ ତ୍ରିବେଣୀ ଏ ସ୍ଥାନ ମାଡ଼ି ॥
ରସନା ବାମଭାଗେ ଗଙ୍ଗା ବହି । ଦକ୍ଷିଣ ପାଶେ ଯମୁନା ବହଇ ॥
ସରସ୍ୱତୀ ବହେ ମଧ୍ୟଭାଗର । ଏକଇ ଦ୍ୱାର ଶିଶୁମୂନା ଘର ॥
ଇନ୍ଦ୍ର ଜଡ଼ ନାଡ଼ି ତଳେ ବହଇ । ମଳ ମୂତ୍ର ସେ ଯହିଁ ଉଧ୍ୱର୍ଗଇ ॥
ଅନ୍ତ ପିତ୍ତ ପୂଟି ପିଳୋହି ଛନ୍ଦ । ସେହି ନାଡ଼ି ମଳଭାଣ୍ଡକୁ ରୁନ୍ଧ ॥

ଏକଇ ନାଡ଼ ବେଳଂଭାଗ ହୋଇ । ମଳ ମୂତ୍ର ଭଗେନ ଭିନ୍ନରେ ବନ୍ଧ ॥
ଅନ୍ତ ପୃଷ୍ଟ ନାଡ଼ି ସାତ ଯେ ହାତ । ଯନ୍ତ୍ରିତ କରନ୍ତି ବ୍ରହ୍ମା ସମସ୍ତ ॥
ଅଷ୍ଟମ ଅଙ୍ଗୁଳ ଅମର ସ୍ଥାନ । ପଦ୍ମଦଳ ଅଷ୍ଟପୁଳ ପ୍ରମାଣ ॥
ମଳ ଅଂଶ ଅଷ୍ଟଅଙ୍ଗୁଳେ ରହି । ଛଅଅଙ୍ଗୁଳରେ ହେଲା ପିଣ୍ଡୋଦ୍ଧ ॥
ଆହାର ସମ୍ଭାଇଁ ଯେଉଁ ନାଡ଼ରେ । ଛତ୍ରିଶହାତ କହନ୍ତି ଯୋଗେ ॥
ଅଗ୍ନି ବାୟୁ ଦୁଇ ଏକସ୍ଥାନରେ । ଭ୍ରମଣ କରନ୍ତି ଷୋଳହାତରେ ॥
ନାଭି ସ୍ଥାନରୁ କଣ୍ଠ ପରଯନ୍ତେ । ଷୋଳହାତ ନାଡ଼ି କହନ୍ତି ଯୋଗେ ॥
ତିନହାତ ଅଧେ ଅନ୍ତ୍ରସ୍ଥିରେ । ସାତହାତ ପ୍ରକଟିଲା ଶରୀରେ ॥
ଛଅ ଅଙ୍ଗୁଳରେ ରସନା ଜାଣ । ଷାଠିଏହାତ ହେଉଛି ପ୍ରମାଣ ॥
ନାଡ଼ର ଘର ନାଭିଗର୍ଭେ ମୂଳ । ଯହିଁରୁ ଜନ୍ମ ହୁଅନ୍ତି ସକଳ ॥
ଯେଉଁ ଚକ୍ରରେ ବିଜେକରନ୍ତି ବ୍ରହ୍ମା । କି କହିବ ଅବା ତାର ମହିମା ॥
ହଂସବାହନେ ସାବିତ୍ରୀଙ୍କି ଘେନ । ଦଶଦଳରେ ବିଜେ ପଦ୍ମଯୋନ ॥
ଡ ଠାରୁ ଫ ପର୍ଯ୍ୟନ୍ତେ ଯେ ତହିଁ । ଦଶଅକ୍ଷର ବେଢ଼ି ରହିଛଇ ॥
ଏହି ଉପରେ ହୃଦଚକ୍ର ସ୍ଥାନ । ବିଷ୍ଣୁ ଦେବତା ଗରୁଡ଼ ବାହନ ॥
ଲକ୍ଷ୍ମୀଙ୍କ ବାମାଗ୍ରରେ ଘେନି ତହିଁ । ଦ୍ୱାଦଶ ଅକ୍ଷରଂ ବସଇ ଯହିଁ ॥
ଜୀବଆତ୍ମାର ସେ ଅଟଇ ଘର । କେଶରେ ବିଜେ ପରମଈଶ୍ୱର ॥
ସୁକର୍ମ କୁକର୍ମ ଯେତେକ ହୋଇ । ଯେତେ ବିଗ୍ରହ ସେ ସ୍ଥାନେ ଛଡ଼ଇ
ଦ୍ୱାଦଶଦଳ ପଦ୍ମ ଉଦେ ହୋଏ । କଅଠ ରୁ ଠଅ ଅକ୍ଷରଯାଏ ॥
ନାଭିରୁ ବାୟୁ ହୃଦୟକୁ ଅସି । ମନର ସଙ୍ଗେ ଏ ପବନ ମିଶି ॥
ଏହି ଉପରେ କଣ୍ଠଚକ୍ର ସ୍ଥାନ । ଷୋଳଅକ୍ଷର ବସେ ବହପନ ॥
ଦୁଇଅକ୍ଷର ବସେ ଦୁଇପାଟି । ହସ୍ତାଙ୍ଗୁଳ ଦୁଇକ୍ଷରେ ପ୍ରକଟି ॥
ଦୁଇଅକ୍ଷର ହୋଇ ଦୁଇ ଭୁଜ । ଦୁଇକ୍ଷର ବସେ ଦୁଇ ଉରଜ ॥
ଦୁଇକକ୍ଷ ପାଖେ ଦୁଇଅକ୍ଷର । ବସେ ଦୁଇକ୍ଷର ଦୁଇ କର୍ଣ୍ଣର ॥
ଦୁଇକ୍ଷର ବସେ ଓଷ୍ଠକୁ ଘେନ । ସୁଷୁମ୍ନା ମିଶି ଓଁକାର ବେଳ ॥
ଏକ ଅକ୍ଷର କେ ରସନା ଘେନି । ଏମନ୍ତେ ଷୋଡ଼ଶ ହୋଇଲା ଜାଣି ॥

ଲଲାଟ ଉଚ୍ଚ ଯେ ଏଥି ଉପରେ । ବେନି ଅକ୍ଷର ବସଇ ଯହିଁରେ ॥
ବାମ ଦକ୍ଷିଣେ ବେନାକ୍ଷର ମେଳ । ଅଚ୍ଛୋଇ ରହିଛି ସହସ୍ର ଦଳ ॥
ସହସ୍ରଦଳରେ ଦଶମ ଦ୍ୱାର । ଦଶଦୁଆରେ ମନର ବିହାର ।
ସେ ସ୍ଥାନରେ ଅଛି କଳ୍ପଦ୍ରୁମ । ସେଠାରେ ମନ କରଇ ବିଶ୍ରାମ ॥
କୋଣାଖଣ୍ଡ ପାର୍ଥ ତହିଁରେ ରହି । ଅନ୍ୟାନ୍ୟ ବାୟୁ ତହିଁ ସଞ୍ଚରଇ ॥
ମନର ଘରଟି କୋଣାଖଣ୍ଡର । ଭ୍ରମଣ କରେ ସକଳ ଠାବର ॥
ଛଡ଼ଚକ୍ର ପରେ କରେ ବିହାର । ଛଇଭେଦି ପାର୍ଥ ପରମହଂସର ॥
ଶୁଣିଲଟି ପାର୍ଥ କହିଲି ମୁହିଁ ଗୁପ୍ତଜ୍ଞାନ ନ କହିବୁ କାହିଁ ।
ଶୁଣି ଅର୍ଜୁନ କୃତକୃତ ହୋଇଁ । ପାଦପଦ୍ମରେ ଶିର ଦେଲା ନେଇଁ ।
ସେହି ପାଦପଦ୍ମ ନିରତେ ଧ୍ୟାୟି । ଅଚ୍ୟୁତାନନ୍ଦ ଦାସ ଯେ କହଇ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନ୍ଦସସ୍ତୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ ।

ଅର୍ଜୁନ ବୋଲଇ ଶୁଣ ମହାପ୍ରଭୁ ପୁଛଇ ମୁଁ ଜ୍ଞାନସାର ।
କେମନ୍ତେ ସେ ଜମ୍ବୁଦ୍ୱୀପ ଭରତଖଣ୍ଡ କହିବା ତହିଁ ବିଚାର । ୧ ।
କେମନ୍ତେ ହୋଇଁ କେଉଁ ଖଣ୍ଡ ପୃଥିବୀ କାହିଁ କେଉଁ ଦେଶେ ବସି ।
ଯାଜନଗରୁ ନୀଳଗିରି ପର୍ଯ୍ୟନ୍ତେ ମହିମା କହି ବିଶେଷି । ୨ ।
ଶ୍ରୀହରି ବୋଲନ୍ତି ଶୁଣ ହେ ଅର୍ଜୁନ ଶାସ୍ତ୍ର ପୁରାଣରେ ଅଛି ।
ହରଗଉରୀଙ୍କ ସମ୍ବାଦ କଥାଏ ଶ୍ରୀଗୁରୁମୁଖୁଁ ଶୁଣିଛି । ୩ ।
ପ୍ରଥମେ ଲକ୍ଷଯୋଜନ ଜମ୍ବୁଦ୍ୱୀପ ସେ ମେଦିନୀ ଅକଳିତ ।
ନବଖଣ୍ଡମଧ୍ୟେ ଭରତଖଣ୍ଡ ଭୂମି ନାମ ସେ ଅଟଇ ଖ୍ୟାତ । ୪ ।
ସେ ଭୂମିଖଣ୍ଡର ପ୍ରମାଣ ଅଟଇ ଦ୍ୱାଦଶ ଯୋଜନ ସୀମା ।
ନୁହଇ କଳି କେ କେଣେ ଅଛି ପାର୍ଥ କହିବା କିଛି ମହିମା । ୫ ।
ଭରତଖଣ୍ଡ ପାର୍ଥ ଦୁଇ ଅଟଇ ଯାଜନଗର ନାମେ ପୁର ।

ପ୍ରଥମେ ସେଠାରେ ବିରଜା ଦେବୀର ପାଦପଦ୍ମେ ସେବା କର । ୬ ।
ଜଗତ୍‌ଦେବ ଯେ ବୈତରଣୀ ସଙ୍ଗେ ମହାଦେବ ବିଲୋଚନ ।
ତୀର ଦେଉଳ ସେ ସ୍ଥାନରେ ପବିତ୍ର ପାଞ୍ଚକ୍ରୋଶ ଆୟତନ । ୭ ।
ଲୋକେ ସେ ଭୂଆଣ ଏ କ୍ଷେତ୍ର ମଧ୍ୟେଣ ଆନ ନିୟମ ଯେ ନାହିଁ ।
ଯାଉଁଳବନ୍ଧରେ ନିୟମ କଲେ ଯେ ତତକ୍ଷଣେ ସେ ଫଳଇ । ୮ ।
କେବେହେଁ ପୁରୁଣା ନୁହଇ ସେ କ୍ଷେତ୍ର ସହସ୍ର ଯୁଗେ ନବୀନ ।
ସେ ସ୍ଥାନ ଦକ୍ଷିଣ ଭାଗରେ ବସିଛି ଦେଶ କାବେର ନାମେଣ । ୯ !
ବ୍ରାହ୍ମଣୀନଦୀ ସଙ୍ଗତରେ ସର୍ବତ୍ର ନିତଠୋଉରଭାଗରେ ।
ସେ ଭୂମି ମହିମା କହିବା ଅର୍ଜୁନ ମୂଳପୀଠ ବଟେରରେ । ୧୦ ।
ଦେଶେକ ବସିଛି ଅଲସୁଆଁ ବୋଲି ତାର ଦକ୍ଷିଣଭାଗରେ ।
ବରୁପାଉତ୍ତରଭାଗଭୂମିଖଣ୍ଡ ମୂଳସୂକ ବୋଲି ତାରେ । ୧୧ ।
ଶୁଣ ଅର୍ଜୁନ ଦକ୍ଷିଣଭାଗେ ପୁଣ କଟକ ଦେଶଟି ସେନ୍ତୁ ।
ଭୁତଭୂମି କନିଭାଗଟି ଅଛଇ ଓଡ଼ିଶା ରାଜ୍ୟଙ୍କୁ ଶୁଣହୁଁ ।୧୨ ।
ଏଥୁଅନ୍ତେ ଶୁଣ ବଶିଷ୍ଠ ରୂପେ ଜାଣ ଭୂମିଖଣ୍ଡ ଏକ ଉଜ ।
ବ୍ରହ୍ମଭୁବନେଶ୍ୱର ଶଙ୍ଖଚକ୍ର ସେ ଗଦାପଦ୍ମ ଚତୁର୍ଭୁଜ । ୧୩ ।
ଭୂତଭୂମି କର କମଳ ଅଛଇ ପେଟକୁକ୍ଷାଦି ଏ ସ୍ଥାନ ।
କୋଠାଗ୍ନି ଯହିଁରେ ଦହନ କରୁଛି ଆହାର ପାକ ବିଧାନ । ୧୪ ।
ଏଥୁ ଅନନ୍ତରେ ଦକ୍ଷିଣଭାଗରେ ଗହାଙ୍ଗ ଯେ ଦେଶ ବସି ।
ଭୁଲସିକଉର୍ବି ଏହି ଭୂତଭୂମି ରହେ ହୃଦସ୍ଥ ଯା ଭାଷି । ୧୫ ।
ଶୁଣ ଧନଞ୍ଜୟ ଦକ୍ଷିଣଭାଗରେ ଅଠରନଳା ଯା ନାମ ।
ଭୂତଭୂମି କଣ୍ଠ ସ୍ଥାନ ଏ ଅଛଇ ଷୋଳଦଳଙ୍କ ବିଶ୍ରାମ । ୧୬ ।
ତଥିଉପରେ ଦ୍ୱାରୀ ଅଟେ ଶୁଣନ ତାର ଅର୍ଦ୍ଧମାବା ନାମ ।
ବିପୁରଦେବୀ ଯେ ତାହାଙ୍କୁ ସେ ବୋଲି ଭାବୁଛନ୍ତି ପୁରସ୍ତମ ୧୭ ।
ପରାଶର ବୋଲି ଯେଉଁ ଭୂମିଖଣ୍ଡ ଗଦାହସ୍ତ ସେ ଅଛଇ ।
ଶଙ୍ଖହସ୍ତ ବୋଲି ହାଟକ ଈଶ୍ୱର ଭରତଭୂମି ସେ ହୋଇ । ୧୮ ।

ଶୁଣ ଅରଜୁନ ଏଥୁ ଅନନ୍ତରେ ବଡ଼ଦାଣ୍ଡ ବୋଲି ଯାହା ।
ଭରତଭୂମିର ଗାଲଯାଟି ଦୁଇ ଆନମୁଦା ବୋଲି ତାହା । ୧୯ ।
ଭରତଭୂମି ସିଂହଦ୍ୱାର ଯେଉଁଠାରେ ଗୋପ୍ୟ ଜଗନ୍ନାଥ ତହିଁ ।
ସେ ଭୂମି ମୁଖ ନାସାପୁଟ ଏହାଟି କାଶିବିଶ୍ୱନାଥ ଯହିଁ । ୨୦ ।
ଭରତଭୂମି ଦନ୍ତପାଟି ବାଇଶି ପାବଛ ନାମ ଯାହାର ।
ଜିହ୍ୱା ମୁଖ ଜଗମୋହନ ଅଟଇ ଗରୁଡ଼ସ୍ତମ୍ଭ ଯାଶର । ୨୧ ।
ମନ ପବନ ଗରୁଡ଼ ନାମ ରହି ଦେଖନ୍ତି ପୁରୁଷୋତ୍ତମ ।
କଳାଗ୍ରଏଟ ଏ ନୟନ କାଳନ୍ଦୀ ତଟରେ ବଟ ବିଶ୍ରାମ । ୨୨ ।
ବଟେଶ୍ୱର ସେହି ସ୍ଥାନରେଣ ସ୍ଥିତ ସଦ୍ଭକ୍ଷ୍ୟ ଅଦୃଶ୍ୟ ପ୍ରାପ୍ତେ ।
ବିକୁଣ୍ଟଭୂମି ମଧ୍ୟରେଣ କପାଲମୋଚନ ମୂରତି ରହେ । ୨୩ ।
ବଲ୍ଲେଶ୍ୱର ଜମ୍ବେଶ୍ୱର ମାର୍କଣ୍ଡ ପାତାଳେଶ୍ୱର ଏ ଗୃହଁ ।
ଜ୍ୟୋତି ଅଖଣ୍ଡ ନିର୍ମଳ ନିରଞ୍ଜନ ମହିମା ନୋହେ ବିସ୍ତାର । ୨୪ ।
ଶଙ୍ଖନାଳରେ କପିଳେଶ୍ୱର ଛନ୍ତି ଜମ୍ବେଶ୍ୱର ତହିଁ ପାଶ ।
ଅନେକ ମହିମା ଅଷ୍ଟଶମ୍ଭୁଙ୍କର କହି କେ କରିବ ଶେଷ । ୨୫ ।
ଅଷ୍ଟଚଣ୍ଡି ନାମ ଶୁଣ ହୋ ଅର୍ଜୁନ ବିମଳା ରାମଚଣ୍ଡିକା ।
କାଳିକା ବାଗୁଳା ଛପ୍ପୃଚଣ୍ଡି ମହାମାୟା ଅର୍ଦ୍ଧଶୋଣଳିକା । ୨୬ ।
ସର୍ବମଙ୍ଗଳା ସଙ୍ଗତେ ଯେନି ଅଷ୍ଟଚଣ୍ଡିକା ନାମଟି ଏହି ।
ଅଷ୍ଟଶମ୍ଭୁ ଅଷ୍ଟଚଣ୍ଡୀ ଏ କ୍ଷେତ୍ରକୁ ବେଢ଼ିଣ ଅଛନ୍ତି ରହି । ୨୭ ।
କଳାଗ୍ରଏଟ ପାଶରେ ରତ୍ନସିଂହାସନ ଉପରେ ଠାକୁର ।
ଶ୍ରୀଜଗନ୍ନାଥ ବଳଭଦ୍ର ସୁଭଦ୍ରା ସୁଦର୍ଶନ ସଙ୍ଗତର । ୨୮ ।
ସର୍ବ ନଇବେଦ୍ୟ ଲାଗଇ ସେଠାରେ ମଣୋହି କୋଠାରେ ଥୋଇ ।
ବାସନା ଚେତନା ଜ୍ୟୋତଚନ୍ଦ୍ର ଯେନି ମଣୋହି ଭୋଗ କରଇ । ୨୯ ।
ଜୀବକର୍ତ୍ତା ସେ ଯେ ଜଗତ ଈଶ୍ୱର ଜୀବରୂପେ ଭୋଗ ତାର ।
ଅଶେଷ ସଂସାର ଚରାଚର ଯାର କଳ୍ପଣାରେ ଅବତାର । ୩୦ ।
ମୁହିଁ ଅବା କେଉଁ ଶ୍ଳୋକ ହୋଇ କହିବ ତାଙ୍କ ମହିମା ।

ଯାହାର ବୈଷ୍ଣବମାୟାରେ ଭ୍ରମନ୍ତି ହର ନର ସୁର ବ୍ରହ୍ମା । ୬୧ ।
କୋଟିଏ କୋଟି କାଣ୍ଡକେ ମୁଁ ଅନ୍ତର କାହୁଁ ମୋର ଏତେ ଜ୍ଞାନ ।
ଶ୍ରୀହରି କୃପାରେ ଏ ଗୀତା ପ୍ରକାଶ କହେ ଅତ୍ୟନ୍ତ ଅଧମ । ୬୨ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ ।

କୃଷ୍ଣ ଚରଣତଳେ ପଡ଼ି ପାର୍ଥ । ସନ୍ଦେଶ ଫେଡ଼ି କହ ଜଗନ୍ନାଥ ।୧।
ବାକି କେତେ କଥା ରହିଲା ପର । ଫିଟୁ ମୋ ମନରୁ ସଂଶୟ ଭାର ॥
ଅଙ୍ଗନ୍ୟାସ କରନ୍ୟାସ ବିସ୍ତର । ଆତ୍ମାଶୁଦ୍ଧି ଭୂତଶୁଦ୍ଧି ପ୍ରକାର ।୨।
ମାତୃକା ଷୋଡ଼ଶ ପୂଜା ସଂଯୋଗ । କେଉଁ ମନ୍ତ୍ରରେ ଟେ ଲାଗଇ ଭୋଗ
କାହାକୁ ଭୋଗ ଦେଇଁ କେବା ପାଇଁ । କେଉଁ ଦେଅଁ କେଉଁଠାବରେ ଥାଇ
ଯେବେ ମୋ ଠାବରେ ସୁଦୟା ଥିବ । ଏଥି ତଦନ୍ତ ମୋତେ କହିଦେବ ।
ଶ୍ରୀହରି କହନ୍ତି ଶୁଣ ଅର୍ଜୁନ । କହିବା ତୋତେ ଏ ବିଧି ବିଧାନ ॥
କରନ୍ୟାସ ଏ ଅଙ୍ଗୁଷ୍ଠି ତର୍ଜନୀ । ମଧ୍ୟ ଅନାମିକା କନିଷ୍ଠା ଘେନି ।
ଅଠାଇଶକ୍ଷର ମନ୍ତ୍ର ଏଥିର । ମୁଖେ ଉଚ୍ଚାରେ ଏ ଗୋପ୍ୟକି ସାର ॥
ଅଙ୍ଗନ୍ୟାସ ତୋତେ କହିଣ ଦେବା । ହୃଦୟ ଶିରଶିଖା ଛୁଆଇଁବା ॥
ନେତ୍ର କବଚୟ ଏ ପାଞ୍ଚ କର । ସେହି ମନ୍ତ୍ରାଦି ଏ ସ୍ଥାନାଦି ଧର ॥
ଭୂତଶୁଦ୍ଧି ଷଡଚକ୍ରାଦି ନ୍ୟାସି । ଆତ୍ମାଶୁଦ୍ଧିରେ ମନଜ୍ଞାନେ ମିଶି ॥
ବାହାର ଭିତର ମାତୃକା ଧୁଇ । ତାକୁ ଚଢ଼ିଲେ ନିର୍ମଳ ହୁଅଇ ॥
ଷୋଡ଼ଶୋପଚାର ପୂଜାହିଁ କଲେ । ଦେଅଁ ବଶହୋଇ ମନ୍ତ୍ର ପଢ଼ିଲେ ॥
ଗୋପାଳମନ୍ତ୍ରରେ ଲାଗଇ ଭୋଗ । ତୋତେ କହିଲି ଏ ଜ୍ଞାନସଂଯୋଗ ॥
ଜଗନ୍ନାଥ ନାମ ଚାରି ଅକ୍ଷର । ଚାରିଅକ୍ଷର ପାର୍ଥ ଚାରି ଠାକୁର ॥
ଚାରିଠାକୁରଙ୍କ କହିବା ନାମ । ସୁଦର୍ଶନ ସୁଭଦ୍ରା ବଳରାମ ॥
କଳାଶ୍ରୀମୁଖ ନାମ ଜଗନ୍ନାଥ । ଏ ଚାରିଅକ୍ଷର ବ୍ୟାପିଛି ଜଗତ ॥

ଜଅ ଅକ୍ଷର ଜଗତ ଘୋଟିଛୁ । ଜଳରୁ ସର୍ବ ଉତ୍ପତ୍ତି କରୁଛୁ ॥
ଦେହ ସ୍ଥୂଳକୁ ଏ ବୋଲି ସଂସାର । ଜୀବାତ୍ମାରୂପେ ଭୋଗ ନାନାମ୍ବର ॥
ଠୁଳ ଆକାର ଏ ବୋଲି ଦେହକୁ । ଶୂନ୍ୟ ଅଣାକାର ବୋଲି ମନକୁ ॥
ବ୍ରହ୍ମାଣ୍ଡଯାକ ଏ ବହୁଛୁ ଶିରେ । ଅନନ୍ତ ନାମଟି ବୋଲି ତାହାରେ ॥
ସେହିଟି ଅଟଇ ଷୋଳ ନୟନ । ଷୋଳ ନାମଟି ସେହି ବୋଲି ଘେନ ॥
ଆହୁର କହିବା ତୋତେ ଅର୍ଜୁନ । ଚନ୍ଦ୍ର ସୂର୍ଯ୍ୟଙ୍କର କଳାବିଧାନ ॥
ବତିଶ କଳା ଚନ୍ଦ୍ର ସୂର୍ଯ୍ୟ ଘେନି । ଚବିଶ କଳାଟି ଗାୟତ୍ରୀ ପୁଣି ॥
ଗାୟତ୍ରୀ ଚବିଶ ବ୍ରହ୍ମାଣ୍ଡ ହୋଇ । ଉତ୍ପତ୍ତି ପ୍ରଳୟ କରନ୍ତ ସେହି ॥
ବାକି ଆଠ କଳା ରହିଲା ଯହିଁ । ଆଠ ବ୍ରହ୍ମାଣ୍ଡ ସେ କହିବା ତହିଁ ॥
ମୂଳକମଳରେ କର ବିଶ୍ରାମ । ପି ଭି ଇ ସୁ ଶୂର କଳାଙ୍କ ନାମ ॥
ଉର୍ମ ଧୂର୍ମ ଜ୍ୟୋତି ଜ୍ୱାଳାଟି ସେହି । ଏହା ଭେଦିଲେ ଦେବଲୋକେ ଯାଇ ॥
ନିଦ୍ରା ଆହାର ବାସ୍ନ ମଇଥୁନ । ଶୂର କଳା ଏଟି ଦେହ ବଧାନ ॥
ଚବିଶ ଆଠରେ ବତିଶ ହେଲା । ଅଷ୍ଟାଙ୍ଗ ଯୋଗଟି ସେ ଆଠ କଳା ॥
ଚବିଶ ଆଠରେ ବତିଶ ଭୋଗ । ସର୍ବଦା ଥାଇ ଏ ଦେହେଁ ସଂଯୋଗ ॥
ଏବେ କହିବା ଗୁରକ୍ଷର କଥା । ଜ ଅକ୍ଷରଟି ଜଗତକରତା ॥
ଗୁ ଅକ୍ଷରଟି ସେ ରେବତୀପତି । ଶଙ୍ଖ ଗୋକ୍ଷୀର ଶ୍ୱେତ ତାଙ୍କ ମୂର୍ତ୍ତି ॥
ଣ ଅକ୍ଷରର ଯେ ମହିମା ପୁଣ । କହିଦେବା ତୋତେ ଶୁଣ ଅର୍ଜୁନ ॥
ଣ ଯେ ଗଗନମାର୍ଗ ଶୂନ୍ୟ ସେହି । ଜ୍ଞାନ ପ୍ରକାଶ ତାହାଠାରୁ ହୋଇ ॥
କର୍ମ ଧର୍ମ ବାହ୍ୟଶୁଦ୍ଧି ବିଗ୍ରହ । ଶୂନ୍ୟ କରତା ଭେଦେ ସବୁଠାଇଁ ॥
ଣ ସୁଦର୍ଶନ ଯେ ମନ ସ୍ୱରୂପ । ଭୂମି ମଧ୍ୟେ ଦଶ ମିଶି ସେ ଗୋପ୍ୟ ॥
ତା ଅଙ୍ଗ ଅକ୍ଷରୁ ଭଜିଲେ ପାଇ । ତୋତେ ଯେ ଉପଦେଶ ଦେଲି କହି ॥
ଏବେ କହିବା ଯେ ନାମ ଅକ୍ଷର । ଏମନ୍ତ ମହିମା ଅଟେ ତାହାର ॥
ଆଦ୍ୟଶକ୍ତି ଯୋଗମାୟା ବୋଲଇ । ନାସ୍ତି ଆସ୍ତିରେ ସଂସାର କରଇ ॥
ନାମୂ ଭଦ୍ରା ଯେ ରଜଗୁଣଯୁକ୍ତ । ନାଭିକମଳୁଁ ବ୍ରହ୍ମା ହେଲେ ଜାତ ॥
ସେ ପୁଣ ଜଗତ ଜାତ କରଇ । ପ୍ରଳୟ କାଳେ ସର୍ବ ସଂହରଇ ॥

ଅକାର ମହିମା କହିବା ଏବେ । ଆଣୁ ମନ୍ଦାକିନୀ ଯା ପାଦେ ଧେବେ ॥
ସ୍ଥୂଳ ଅସ୍ଥି ଛିଦ୍ର ନାହିଁ ତାହାର । ସ୍ତମ୍ଭୀଭୂତେ ଚତୁର୍ଦ୍ଦଶ ଆବୋର ॥
ଧ୍ୟାନଧାରଣା ଲୟ ପୂର୍ବ କେତେ । ବେଦପୁରାଣ କହିଅଛି ଯେତେ ॥
ରାଧିକା ଦୂତିକା ବେନି ପାଶର । ମଧ୍ୟେ ବିଜେ ମୋହନ ବେଣୁଧର ॥
ଦାରୁ ମଧ୍ୟେ ରୂପ ମଧ୍ୟେ ବିହାର । ବିକୁଣ୍ଠ କାଳନ୍ଦୀ ବଟମୂଳର ॥
ଗୁରୁ ଅକ୍ଷର ନାମ ଗୁରୁ ରୂପ । ସିଂହାସନେ ଯୋଗମସ୍ତକରେ ଗୋପ୍ୟ ॥
ଗରୁଡ଼ସ୍ତମ୍ଭ ପାଶେ ଥାଇ ଦେଖ । ଦର୍ଶନ ହୁଅଇ କଳାଶ୍ରୀମୁଖ ॥
ଅର୍ଜୁନ କୃଷ୍ଣଚରଣେ ପଡ଼ିଲା । ମନୁ ସଂଶୟ ସକଳ ଛାଡ଼ିଲା ॥
ଆଶ୍ରେ କରଣ ପାଦ ଅରବିନ୍ଦ । ଧ୍ୟାଇଣ କହଇ ଅଚ୍ୟୁତାନନ୍ଦ ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ
ଦ୍ୱାଦଶୋଽଧ୍ୟାୟଃ ।

---

## ତ୍ରୟୋଦଶ ଅଧ୍ୟାୟ ।

ଶ୍ରୀକୃଷ୍ଣ ଚରଣେ ଅର୍ଜୁନ ପଡ଼ିଣ ପୁଛଇ ଯେ ଜ୍ଞାନସାର ।
କେମନ୍ତ ପ୍ରକାରେ ଶରୀର ହୋଇଛି କହିବା ଏଥି ବିଚାର । ୧ ।
ତିନିପୁର ପୁଣ ଚଉଦଭୁବନ ଦେହରେ କାହିଁ ରହିଛି ।
ପ୍ରତି ପ୍ରତି କରି କହ ମହାପ୍ରଭୁ ସଂଶୟ ନ ରହୁ କିଛି । ୨ ।
ଶ୍ରୀହରି କହନ୍ତି ଶୁଣ ଧନଞ୍ଜୟ କହିବା ଏଥି ବିଚାର ।
ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ ପଞ୍ଚଭୂତ ଏ ଶରୀର । ୩ ।
କଟିଠାରୁ ପାଦତଳ ପର୍ଯ୍ୟନ୍ତେ ପାତାଳପୁର ବୋଲଇ ।
ଏଥି ମଧ୍ୟେ ସପ୍ତପାତାଳ ଅଛଇ ତାହା ଦେବା ତୋତେ କହି । ୪ ।
ନାଭିକମଳରୁ କଣ୍ଠ ପର୍ଯ୍ୟନ୍ତେ ଏହି ମର୍ତ୍ତ୍ୟଭୁବନ ।

କଣ୍ଠଠାରୁ ଶିର ଶିଖାଯାଏ ସ୍ୱର୍ଗପୁର ଏ ବୋଲ ଅର୍ଜୁନ । ୫ ।
ଏଥିମଧ୍ୟେ ସପ୍ତପୁର ରହିଅଛୁ ତାହା କହିଦେବା ତୋତେ ।
ତନପୁର ମଧ୍ୟେ ଚଉଦଭୁବନ ରହିଛୁ ଯେତେକ ଗୁପତେ । ୬ ।
ପାଦତଳକୁ ଯେ ପାତାଳ କହନ୍ତି ପାପୁଲି ନାମ ବିତାଳ ।
ଜଙ୍ଘକୁ ତଳାତଳ ବୋଲି କହନ୍ତି ପିଣ୍ଡୁ ନାମ ରସାତଳ । ୭ ।
ଗୁହ୍ୟକୁଟି ମହାତଳ କହି ଇନ୍ଦ୍ରି ଅତଳାଳ ନାମ କହିଣ
ତଳପେଟ ନାମ ସୁତଳ ବୋଲାଇ ତୋତେ ଦେଲି ପାଥ କହି । ୮ ।
ଏଥିଉତ୍ତାରେ କହିବା ତୋତେ ଶୁଣ ସପ୍ତଲୋକର ବିଧାନ ।
ପ୍ରତିପ୍ରତି କରି କହୁଅଛୁ ପାଥ ରଖ ହେତୁ କରି ମନ । ୯ ।
ନାଭିସ୍ଥଳକୁ ଯେ ଭୂଲୋକ କହଇ ଭୁବଲୋକ ହୃଦ ଜାଣ ।
ବକ୍ଷସ୍ଥଳ ମହଲୋକ ବୋଲାଇଟି ମୁଖ ଜନଲୋକ ଶୁଣ । ୧୦ ।
ତପଲୋକ ସ୍ଥାନ ନାସିକା ବୋଲାଇ ସତ୍ୟଲୋକ ବୋଲି ତାହା ।
କପାଳକୁ ପୁଣି ସ୍ୱର୍ଗଲୋକ ବୋଲି ଶୁଣ ପାଥ ହୋଇ ସ୍ନେହା । ୧୧ ।
ଚଉଦଭୁବନ ଏହିଟି ଅର୍ଜୁନ କହିଦେଲି ତୋତେ ସତ୍ୟ
ଏଥିପରେ ଅଛି ଗୋଲକଭୁବନ ଯହିଁ ନିତ୍ୟ ମହାନିତ୍ୟ । ୧୨ ।
ପରମ ନିତ୍ୟଧେନ ଏହୁ କହ୍ୟନ୍ତି ତ୍ରିନିତ୍ୟ ଏହି ବୋଲାଇ ।
ଶୁଣିକରି ପାଥ ବୋଲେ ମହାପ୍ରଭୁ କହ ସଂଶୟ ଫିଟାଇ ।।
ଶ୍ରୀକୃଷ୍ଣ ବୋଲନ୍ତି ଶୁଣସର୍ବସାର ଅନନ୍ତର ନୟୃଫଣୀ ।।
ସେହି ନୟୃଫଣୀ ତ୍ରିକୋଣ ସଂଜ୍ଞାତ ତାହା କହିଦେବା ପୁଣି ।
ନିତ୍ୟବୋଲି ଯାହା ପ୍ରଥମ କୋଣଟି ଦକ୍ଷିଣ ନୟନ ତୋର ।
ଲ୍ରୀ ବୋଲି ତହିଁ ବଜେକ ବସିଲ୍ଲୁଂବଳଭଦ୍ର ନାମ ତାର । ୧୩ ।
ମହାନିତ୍ୟ ବୋଲି ଦ୍ୱିତୀୟ କୋଣଟି ସେ ତୋର ବାମ ନୟନ ।
ଶ୍ରୀ ବୋଲି ତହିଁ ବଜେକ ବସିଛୁ ସୁଭଦ୍ରା ତାନାମ ଶୁଣ ।।
ପରମ ନିତ୍ୟ ବୋଲି ଯାହା କହିବ ଏ ବେନିଁ ମଧ୍ୟେ ରହିଲା ।
କ୍ଲୀ ବୀଜ ଧେନି ଜଗନ୍ନାଥ ରୂପ ତ୍ରିକୋଣଟି ପ୍ରକାଶିଲା ।

କହେ ଧନଞ୍ଜୟ ଶୁଣ ମହାପ୍ରଭୁ ବିଗାଜ ହେବୁ ଶୁଣିଲି ।
କୋଟିଜନ୍ମ ପାପ କ୍ଷୟଗଲା ମୋର ଦୁରିତମାନ ଛେଦିଲ ॥
ମୁଁ ଯେବେ ପରଗ୍ଭରକ ଭୃତ୍ୟ ତୋର ଭୃତ୍ୟଙ୍କନେ ଦୟା କର ।
ଧ୍ରୁବମଣ୍ଡଳ ଯେ ଶ୍ରୀହଟପାଟଣା କହିବା ହେବେ ବିସ୍ତାର । ୧୯ ।
କହନ୍ତି ହର ଶୁଣ ପଣ୍ଡୁକୁମର ଧ୍ରୁବମଣ୍ଡଳ ମହିମା ।
ଚରାଚର ପଶି ମିଶି ରହିଛି କେହି ନ ଜାଣେ ଏସୀମା । ୨୦ ।
ଅମରଭୁବନ ଅଟଇ ଏ ସ୍ଥାନ ଧ୍ୱନି ଶୁଭୁଅଛି ଯହିଁ ।
ସେ ଧ୍ୱନି ଶୁଣିଲେ ଅମର ହୋଇବୁ ଦେଲି ତୋତେ ପାର୍ଥ କହି । ୨୧ ।
ଶ୍ରୀହଟପାଟଣା ଅଟି ଅଗୋଚର ଦେବଲୋକଙ୍କର ହାଟ ।
ମନ ଜ୍ଞାନୀ ଯୋଗୀ ସେ ପଥେ ଗମନ୍ତି ଅନ୍ୟ ନ ପାବନ୍ତି ବାଟ । ୨୨ ।
ତ୍ରିବେଣୀ ନଦୀ ସେହିଠାରେ ବହୁଛି ହାଟପାଟଣାକୁ ଭେଦ ।
ତହିଁ ପଶିଲେ ତୁ ନିର୍ମଳ ହୋଇବୁ ପାପ ପଳାଇବୁ ଛେଦ । ୨୩ ।
ତୋହର ଦେହ ଦେଖ ଜ୍ଞାନଭଣ୍ଡାର ଆଉ କ କହିବି ତୋତେ ।
ତଲେ କରମନଜ୍ଞାନ ରେଚନାରେ ପୂରିଅଛି ସର୍ବଭୂତେ । ୨୪ ।
ନିଷ୍ଠେଁ ସଦଗୁରୁ ଆଶ୍ରେକଲେ ଯାଇ, ତହିଁ ଜ୍ଞାନର ବଗ୍ଭର ।
କହିବାକୁ ଯାହା ବଚନେ ନ ଆସେ ଦେଖିବାକୁ ଅଗୋଚର । ୨୫ ।
ଶାସ୍ତ୍ର ଗୋଚରରେ ସମସ୍ତେ କହନ୍ତି କଥା ପଟାନ୍ତର ହୋଇ ।
ସ୍ଥୂଳ ସୂକ୍ଷ୍ମ କେତେ ଜୀବକ ଅଜୀବ କାହିଁ ଥାଇ କାହିଁ ପାଇ । ୨୬ ।
ଲୀଳା କରୁଅଛି କୁହୁକ ଲଗାଇ ମାୟାକୁ ବେଷ୍ଟିତ କରି ।
ଜଗତଯାକ ଯେ ପୂରି ମିଶିଅଛି ନ ପାରନ୍ତି ବାରିଧରି । ୨୭ ।
ଅଣସାଧନା ବାଟରେ ପଡ଼େ ଭେଟ ଯେବେ ଗୁରୁଆଜ୍ଞା ହୋଇ ।
କୋଟି କୋଟି ଶାସ୍ତ୍ର ସ୍ମୃତି ଶୁଣିଲେ ଜ୍ଞାନଗୋଚର ନୋହଇ । ୨୮ ।
ଶାନ୍ତ ଆତ୍ମା ଶୁଦ୍ଧ ନିରମଳ ଚିତ୍ତ ହେଲେ ସେ ମୁଁ ଏକରୂପ ।
ଭକ୍ତଜନ ମୋତେ ନିରତେ ଦେଖନ୍ତି ଅଭକ୍ତଜନେ ମୁଁ ଗୋପ୍ୟ । ୨୯

ଶ୍ରୀକୃଷ୍ଣ ବଚନ ଶୁଣିଣ ଅର୍ଜୁନ  କୃତକୃତ ଭାବ ହୋଇ ।
ପାଦପଦ୍ମେ ଆଶା କରିଣ ଭରସା ଅଚ୍ୟୁତଦାସ କହଇ । ୩୦ ।

ଇତି ଶ୍ରୀ ଜ୍ଞାନ ପ୍ରଦୀପଗୀତାସୁ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣଅର୍ଜୁନ ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।
ସମାପ୍ତୋଽୟଂ ଗ୍ରନ୍ଥଃ ।

---

କଟକ ଏଡୱାର୍ଡ ପ୍ରେସରେ ଶେଖ୍ ନଜର ମହମ୍ମଦ କର୍ତ୍ତୃକ ମୁଦ୍ରିତ ।    ୧୯୧୦

# ବିଜ୍ଞାପନ ।

ନିମ୍ନାଙ୍କିତ ପୁସ୍ତକମାନ କଟକର ପ୍ରଧାନ ୨ ପୁସ୍ତକଦୋକାନରେ ବିକ୍ରୟ ହୁଏ ।

| | |
|---|---|
| କବିତାକଲାପ | ଟ ୦ । |
| କବିତାକଲାପ ୨ୟ ଭାଗ | ଟ ୦ ୵ |
| ନୀତିରତ୍ନହାର | ଟ ୦ / |
| ପାଟୀଗଣିତ | ଟ ୦ ୵ |
| ମାନସାଙ୍କ | ଟ ୦ ୵ |
| ବର୍ଣ୍ଣବୋଧକ | ଟ ୦ / |
| ଭୂଗୋଳସାର | ଟ ୦ ୵୬ |
| ମହାମେଳା ଦର୍ଶନ | ଟ ୦ । |
| ସଙ୍ଗୀତ ସୁଧାନିଧି | ଟ ୦ । |
| ପ୍ରାକୃତକେରଳ | ଟ ୦ । |
| ଏକାଦଶୀମାହାତ୍ମ୍ୟ | ଟ ୦ ୳ |
| ଠଣୁଠଣକଥା | ଟ ୦ । |
| ଶୋଭାବତୀ | ଟ ୦ ୵୷ |
| ନୀତିମଞ୍ଜରୀ | ଟ ୦ ୵ |
| ନଳଚରିତ | ଟ ୦ ୵୬ |
| ଦେଉଳତୋଳା | ଟ ୦ ୵୬ |
| ଉତ୍କଳଦୀପିକା | ଟ ୦ ୵୬ |
| ଗ୍ରହଶାନ୍ତିବୋଲ | ଟ ୦ ୵ |
| ଜଣାଣସଂଗ୍ରହ | ଟ ୦ ୵ |
| ଦୂତବାମନ | [illegible] |
| ଖୁନ୍ତୁକୁଣି | ଟ ୦ ୵ |
| ଟୀକା ରାମାୟଣ (ବଡ଼) | ଟ ୦ । |
| ଭାବାମୃତ | ଟ ୦ ।୵ |
| ଶ୍ଳୋକରତ୍ନାବଳୀ | ଟ ୦ ୵ |
| ,, ୨ୟ ଭାଗ | ଟ ୦ ୵ |
| କଟକଦର୍ଶନ | ଟ ୦ ୵ |
| ଲାଟଦର୍ଶନ | ଟ ୦ / |
| ଜଗବନ୍ଧୁ ଚଉତିଶା | ଟ ୦ / |
| ଭକ୍ତସମ୍ବଳ | ଟ ୦ / |
| ଅର୍ଘ୍ୟବନ୍ଦାପନା | ଟ ୦ / |
| ହରଅଚିନ୍ତା | ଟ ୦ / |
| ବର୍ଣ୍ଣବିବେକ ଚନ୍ଦ୍ରିକା | ଟ ୦ / |
| ଶିବଧନୁର୍ଭଙ୍ଗ | ଟ ୦ / |
| ବାଟଓଷାକଥା | ଟ ୦ / |
| ଗଜେନ୍ଦ୍ରମୋକ୍ଷଣ | ଟ ୦ / |
| ରାଧାକାନ୍ତାଷ୍ଟମୀବ୍ରତକଥା | ଟ ୦ / |
| ଫେର୍ ଫୁରୁର୍ | ଟ ୦ (୩ |
| ମୃଷ୍ଟିସମ୍ଭୂତ ପୁରାଣ | ଟ ୦ ୵୬ |
| ସୁବାସକୁସୁମ | ଟ ୦ (୬ |
| ଶ୍ରୀମଦ୍ଗୀତାସାର | ଟ ୦ ୵୬ |
| ମଧୁପାନ୍ଥ ଓ ହରଷ୍ଟେଟର | ଟ ୦ / |
| ସୂର୍ଯ୍ୟମାହାତ୍ମ୍ୟ | ଟ ୦ / ୩ |
| ଶବଦାବି ଖଣ୍ଡ | ଟ ୦ / |
| ଗୋପାଳ ପୂଜା ପଦ୍ଧତି | ଟ ୦ ୵ |
| ଅକ୍ଷର ଶିକ୍ଷା | ଟ ୦ / |